ନିହାତି ମାମୁଲି କଥା କବିଙ୍କ ରଚନା ଶୈଳୀରେ ମନଛୁଆଁ କବିତାର ରୂପ ନେଇଛି । ହୃଦୟର କୋହ, ମୋହକୁ ନେଇ କବିତାଗୁଡ଼ିକ ଆବେଗମୟ ଓ ଜୀବନବୋଧରେ ମଧ୍ୟ ଉଜ୍ଜଳମୟ । ସଂସ୍କୃତି, ପ୍ରକୃତିର ଅବକ୍ଷୟ, ମଣିଷର ଅବିବେକିପଣିଆ, ସମାଜର ଦୁର୍ନୀତି, ଅନୀତି ଘଟଣାବଳୀ କବିତାରେ ବଡ଼ ମନୋଜ୍ଞ ରୀତିରେ ପ୍ରକାଶ ପାଇଛି । ପ୍ରତ୍ୟେକ କବିତାରେ ଈଶ୍ୱର ବିଶ୍ୱାସ, ଆତ୍ମପ୍ରତ୍ୟୟ, ମାନବିକତା ପ୍ରତି ମଧ୍ୟ ଦୃଢ଼ ଆସ୍ଥା ପୋଷଣ କରାଯାଇଛି । ବୌଦ୍ଧିକତାର ଭୋଜବାଜିରେ କବିଙ୍କ କଲମ ଭଳି ନ ଯାଇ ସାଭାବିକ ଢଙ୍ଗରେ ଗତି କରିଛି । ନିରୋଳା ଓଡ଼ିଆ ଭାଷାର ସହଜ, ସରଳ ବ୍ୟବହାରରେ 'କଥା-ବଥାର ଗାଥା' କବିତା ସଂକଳନଟି ଯେମିତି ରସରସିଆ ସେମିତି ସତସତିକା ।

-ପ୍ରକାଶକ

# କଥା-ବଥାର ଗାଥା

ଚିତ୍ତ ରଂଜନ ପଣ୍ଡା



ସୋନମ ପ୍ରକାଶନ
ବାଦାମବାଡ଼ୀ, କଟକ-12

ISBN - 81 7984-050-6

**କଥା-ବଥାର ଗାଥା**

ଡକ୍ଟର ଚିତ୍ତ ରଞ୍ଜନ ପଣ୍ଡା
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ-୧

**ପ୍ରକାଶକ :**
ସୋନମ ପ୍ରକାଶନ
ବାଦାମବାଡ଼ି, କଟକ-୧୨
ଫୋନ୍ : ୦୬୭୧-୨୩୧୮୯୭୮
ମୋ.: ୯୪୩୭୦୨୮୭୧୮
ପ୍ରଥମ ସଂସ୍କରଣ : ୨୦୧୬
**ପ୍ରଚ୍ଛଦ :**
ବିଜୟ କୁମାର ସାହୁ
**ଅକ୍ଷରସଜ୍ଜା :**
ମା' ଗ୍ରାଫିକ୍ସ
ବାଦାମବାଡ଼ି, କଟକ
ମୂଲ୍ୟ : ୧୦୦.୦୦

---

**Katha-Bathara Gatha** By *Dr. Chitta Ranjan Panda*
Published by - Sonam Prakashan, Badambadi, Cuttack-12
First Edition : 2016 Rs. 100/-

# ପଦିଏ

ଘଟଣା, ଦୁର୍ଘଟଣାକୁ ନେଇ ଜୀବନ। ନିତିଦିନିଆ ଚଲାପଥର ସୁଖଦ ଓ ଦୁଃଖଦ ସ୍ମୃତି, ଅନୁଭୂତିରେ ହୃଦୟ ହୁଏ ଆବେଗପୂର୍ଣ୍ଣ। ଆବେଗ, ଉଚ୍ଛ୍ୱାସର ଉଦ୍‌ବେଳନରୁ କବିତାର ଜନ୍ମ। କମ୍ ଶବ୍ଦରେ ବେଶୀ କଥା ବଖାଣିବାରେ କବିତା କେବଳ ନିପୁଣ। ସ୍ୱଳ୍ପ ସମୟ ମଧ୍ୟରେ ବହୁତ କିଛି କହିବାରେ ସାହିତ୍ୟର ଏହି ପଦ୍ୟ ବିଭାଗଟି ସବୁଠୁଁ ପ୍ରକୃଷ୍ଟ ମାଧ୍ୟମ। ପିଲାଦିନରୁ କବିତା ରଚନା ପ୍ରତି ରୁଚି ଥିଲେ ମଧ୍ୟ ସମସ୍ୟା ବହୁଳ ଜୀବନ ମଧ୍ୟରେ ଲେଖନୀ ମୋର ଅଟକି ଯାଇନି, କିନ୍ତୁ ବେଶୀ ଦୂର ଅତିକ୍ରମ କରିପାରିନି। ସମାରୋହ, ଅଭିଯାନ, ଲାବଣ୍ୟ, କନ୍ୟା, ଅଦ୍ୱିତୀୟା, ଅନନ୍ୟା ପ୍ରଭୃତି ପତ୍ରପତ୍ରିକା ମୋ ଲେଖନୀକୁ ଅନେକାଂଶରେ ପ୍ରୋତ୍ସାହିତ କରିଛନ୍ତି। ସେସବୁରେ ପ୍ରକାଶିତ ଲେଖାଗୁଡ଼ିକ ଏହି ସଂକଳନରେ ସ୍ଥାନ ପାଇଛି। ବ୍ୟକ୍ତି, ସମାଜ, ପ୍ରକୃତିଭିତ୍ତିକ କଥା, ବ୍ୟଥାକୁ ନେଇ କବିତାଗୁଡ଼ିକ ରଚିତ।

କବିର ବ୍ୟକ୍ତିଗତ ଜୀବନ କବିତାରେ ପ୍ରକାଶ ପାଇବା ସ୍ୱାଭାବିକ। ତାହା ଯଦି ବହୁଳମାତ୍ରାରେ ଆତ୍ମକୈନ୍ଦ୍ରିକ ହୋଇଯାଏ ସମାଜ ଜୀବନର ପ୍ରତିନିଧିତ୍ୱ କରିବାରେ ସବୁବେଳେ ସଫଳ ହୁଏ ନାହିଁ। ସେପରି କବିତାରେ ଅନୁଭବ, ଅନୁଭୂତି ପ୍ରଚୁର ଥାଏ; ମାତ୍ର କବିଙ୍କର ଏକଘଟିଆ ଚିନ୍ତାଚେତନାର କାରବାରକୁ ତାଙ୍କ ବ୍ୟତୀତ ଅନ୍ୟକେହି ବୁଝିବା ବେଳେବେଳେ ମୁସ୍କିଲ୍ ହୋଇପଡ଼େ। ପୁଣି ବୌଦ୍ଧିକତାର ଇନ୍ଦ୍ରଜାଲରେ ଆତ୍ମକୈନ୍ଦ୍ରିକ କବିତା ଯଦି ଛନ୍ଦି

ହୋଇଯାଏ, ପାଠକ ତା'ର ଖିଅ ଖୋଲିବା ପାଇଁ ନାକେଦମ ହୁଏ। ଗୋଟାଏ ଗଣ୍ଠି ଖୋଲିଲାବେଳକୁ ଆଉ ଗୋଟାଏ ଗଣ୍ଠି ଆପେ ପଡ଼ିଯାଏ। ବୌଦ୍ଧିକତା କବିର ବୁଦ୍ଧିମତ୍ତାକୁ ତାରିଫ୍ କରେ ସତ, ସମାଜର ଆଚାର-ବିଚାର, ବିଶ୍ୱାସ-ପରଂପରାର ମାନଦଣ୍ଡରୁ ଦୂରେଇ ନ ଯିବା ଭଲ। ଅନୁଭୂତି କବିର ନିଜସ୍ୱ। ହେଲେ କବିତା ପାଠକ ନିମିତ୍ତ ଉଦ୍ଦିଷ୍ଟ। କବି ନିଜ ଭାବପ୍ରବଣତାକୁ ନିୟନ୍ତ୍ରଣ କରି ସମାଜଆଡ଼େ ଟିକିଏ ଆଖି ବୁଲେଇ ଆଣିଲେ କେତେ କଥା।

ସମୟ ବେଳକୁ ବେଳ ବଦଳୁଛି। ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନ ଦେଖାଦେଇଛି। କବିତାରେ ଏହାର ଛାପ ପଡ଼ିବା କିଛି ଅସ୍ୱାଭାବିକ ନୁହେଁ। ପାଠକ ତାଙ୍କ ମାନସିକତାରେ ପରିବର୍ତ୍ତନ ଆଣିବା ଦରକାର। ଖାଲି ଦୁର୍ବୋଧ, ଅବୋଧ କହି ଆଧୁନିକ କବିତାରୁ ମୁହଁ ଫେରାଇନେଲେ ଓଡ଼ିଆ କବିତାର ପ୍ରଗତି କଥା ଚିନ୍ତା କରାଯାଇ ନ ପାରେ।

ଉକ୍ତ ଗ୍ରନ୍ଥର କବିତାଗୁଡ଼ିକ ବୌଦ୍ଧିକତାରେ ଭାରାକ୍ରାନ୍ତ ନୁହଁ, ବରଂ ବେଶ୍ ସହଜ, ସ୍ୱଭାବ ଢଙ୍ଗରେ ସ୍ପଷ୍ଟ। ମନ କଥା ଓ ବେଦନାର ମାର୍ମିକ ପରିପ୍ରକାଶ ହେଉଛି "କଥା-ବଥାର ଗାଥା" କବିତା ସଂକଳନ। ପାଠକ ମନକୁ ଏହା ଛୁଇଁ ପାରିଲେ ମୋ ପାଇଁ ବିଶେଷ ପ୍ରେରଣାଦାୟକ ହେବ।

ଚିତ୍ତ ରଂଜନ ପାଣ୍ଡା

# କବିତା କ୍ରମ

# ସରଗ

କେତେ ଦୂର, କୋଉ ବାଟ
କ'ଣ ତା' ଠିକଣା
କେମିତିକା ଜାଗା ସିଏ
କିପରି ଯିବାକୁ ହୁଏ
ପଚାରି ପଚାରି ଥକିଲି
ଉତ୍ତର ପାଇ ବାଟବଣା ହେଲି ।

ଆଖପାଖ ନୁହଁ
ଆଉ ଏକ ଜଗତ
ଯୋଉଠି ରହନ୍ତି ଦେବଦେବୀଗଣ
ସେମାନଙ୍କ ଇଚ୍ଛା ଅନିଚ୍ଛାକୁ ନେଇ
ମଣିଷ ବଞ୍ଚଇ ଜୀବନ ତମାମ
ଖୁସି କରିବା ସେମାନଙ୍କୁ
ଧରମ ପଣ ।

ହିନ୍ଦୁ, ମୁସ୍‌ଲିମ୍, ଖ୍ରିଷ୍ଟାନ ଗଢ଼େ
ନିଜ ଢଙ୍ଗେ ନିଜ ଧର୍ମ ଇମାରତ

ମଉଳବାଦୀ କିନ୍ତୁ ସଦା ଆଗଭର
ଈଶ୍ୱରଙ୍କ ପାଖ ଲୋକ କହି
ଡେଙ୍ଗୁରା ବାଡ଼େଇ କରେ ଆତ୍ମ ପ୍ରଚାର
ନିଜ ମତ, ବିଶ୍ୱାସକୁ ବଡ଼ ଦେଖାଇ
ଅଯଥା କରଇ ନରସଂହାର।

ସ୍ୱର୍ଗର ମାୟାରେ ବାୟା ହୋଇ
ମଣିଷର ବଇରୀ ମଣିଷ ହୁଅଇ
କସ୍ତୁରୀ ମୃଗ ପରାୟେ ଘୂରି ବୁଲଇ
ମନ୍ଦିର, ମସ୍‌ଜିଦ୍ ନାଁ ନେଇ
ସକଳ ଘଟେ ନାରାୟଣ
ଧର୍ମଭୀରୁ ଅକାରଣେ କରଇ ଜୁଲମ।

ଦେବତା ନୁହଁଇ ଅଜଣା ଗ୍ରହର
ପ୍ରତିଟି ମଣିଷ ଚଳନ୍ତି ଠାକୁର
ଜାତି, ଧର୍ମ, ବର୍ଣ୍ଣ ସବୁ ଅସାର
ନିବିଡ଼ ହୋଇଲେ ଆଦର, ମାନ
ଧରା ପାଲଟିବ ସରଗ ସମାନ।



# ଶୁଖିଲା ନଈ

ଖରାଦିନ ଜହ୍ନରାତି
ନଈକୂଳ ପଠା
ମନରେ ଆଙ୍କିଛି
ଅଲିଭା ରେଖା ।

ଦେଖିଲେ ନଈ
ତାଜା ହୋଇଉଠେ
ମୋ ପିଲାଦିନ ସ୍ମୃତି ।

ସଂଜବୁଡ଼ ଜହ୍ନ ଆଲୁଅରେ
ନଈପଠାରେ ସାଙ୍ଗମେଳେ
ଖେଳୁଥିଲୁ ବାଗୁଡ଼ି, କିତିକିତି
ଧରାଧରି, ଗଡ଼ାଗଡ଼ି ହୋଇ
ଦେହସାରା ରଡ଼ରଡ଼
ହେଉଥିଲା ବାଲି ।

ସୁଲୁସୁଲିଆ ପବନ
ସତେକି ଆରାମ
ଗାମୁଛା ପାରି
ବାଲି ଉପରେ ଶୋଇ
କରୁଥିଲୁ ଖଟି ।

ଘାଟରେ ନ ଥାଏ
ବେଶୀ ପାଣି
ଅଦିନିଆ ବାଟୋଇ
ବୁଢ଼ା, ବୁଢ଼ୀ
ଗୋଡ଼ ମାରିମାରି
ବାଡ଼ି ଧରି
ଲୁଗା ଟେକି
ହେଉଥା'ନ୍ତି ପାରି ।

ହାଟୁଆ ବାଟୁଆ
ବାଲିର ପାଦଚଲା
ରାସ୍ତାରେ ଚାଲୁଥାନ୍ତି
ପାଦ ଗଣିଗଣି ।

କୋଉଠି କେମିତି
ନଈ ଧାରରେ
ମାଛ ମାରୁଥାଏ ଧୀବର ।

କୁମ୍ଭୀ ବାନ୍ଧି, ତେଣ୍ଡା ପକେଇ
ବୋହୁଥାଏ ପାଣି
ବିଲ ବାଡ଼ିକୁ ଚଷୀ ।

ଗାଁ ମାଇପେ
ଦଳଦଳ ହୋଇ

ଗପସପ କରି
ନଈକୂଳେ ଜମାନ୍ତି ଭିଡ଼
ହେଉଥାନ୍ତି ଶଉଚ
ଧୋଉଥାନ୍ତି ଲୁଗାପଟା ।

ଆଜି ଆଉ ନାହିଁ
ହସଖୁସି, ଶାନ୍ତ
ପରିବେଶର ଘାଟ
କଂକ୍ରିଟ ପୋଲ
ନଈ ଛାତିରେ
ଯାଇଛି ଚଢ଼ି
ଋପି ହେଇ ନଈ
କାମୁଡ଼ିଛି ମାଟି
ଭାଗ୍ୟକୁ ଆଦରି ।

ଗାଡ଼ିମଟର ଦିନରାତି
ପେଁ ପାଁ, ଭେଁ ଭାଁ କରି
ପୋଲରେ ହେଉଛନ୍ତି ଆତଯାତ ।

ନଈବନ୍ଧ ପାଲଟିଛି
ଜାତୀୟ ରାଜପଥ
ନଈପଠା, କ୍ଷେତବାଡ଼ି
କଳକାରଖାନା, କୋଠାବାଟୀରେ
ହୋଇଉଠିଛି ସହର ।

ନଈର ଧାର
ଯାଇଛି ଶୁଖି
ଦିଶୁଛି କଙ୍କାଳ ସରି ।

ଠାଏ ଠାଏ
ଖୋଳା ଚାଲିଛି ଗାଡ଼

ଟ୍ରକ, ଟ୍ରାକ୍ଟର
ନଈରେ ପଶି
ବୋହୁଛନ୍ତି ବାଲି
କୁକୁର, ବିଲୁଆ
ମଢ଼କୁ ଟାଣିଲା ପରି ।

ଅଳିଆ, ନର୍ଦ୍ଦମା ପାଣି
ନଈରେ ପଶି
ଛାଡୁଛି ଦୁର୍ଗନ୍ଧ
ମୁର୍ଦ୍ଦାରକୁ ବଳି ।

ପ୍ରଗତି ନାମରେ
ନଈକୁ ମାରି
ଧରା ପାଲଟିଛି
ରୁକ୍ଷ ମରୁଭୂମି ।

ନିଜ ଗୋଡ଼େ ନିଜେ
ମାରିଲେ କୁରାଢ଼ି
କେଉଁ ଦିଗକୁ ହେବ
ମଣିଷର ଗତି
ଭବିଷ୍ୟତ ନେବ
ତା'ର ନିଷ୍ପତ୍ତି ।



# ମନର ନିଆଁ

ମନର ନିଆଁ
କୁହୁଳା ନିଆଁ
ପାଉଁଶ ଭିତରେ
ଦିକଦିକ ହୋଇ
ଜଳୁଥାଏ ସଦା
ଉପରକୁ ଜମା
ପଡ଼େନି ଜଣା ।

ଗଦିଠୁଁ ନରମ
ପାଉଁଶ ଗଦା
ତା' ଭିତରେ ନିଆଁ
ରହିଥାଏ ଛପି
ବିଲେଇ ମୂଷାକୁ
ଛକିଲା ପରି ।

ଚୁପ୍ ସଇତାନ ସେ
କରିଦିଏ ଛାରଖାର
ମୁହୂର୍ତ୍ତକେ ଜାଳିପୋଡ଼ି।

ପାଇଲେ ଶୁଖିଲା ପତର
ଧପ୍‌କରି ଜଳି ଉଠି
ଲିଭେ ଚଟ୍‌କିନା।

କାଠ, ବାଉଁଶ ଗୁଞ୍ଜିଲେ
ଧୂଆଁ ଉଠି
ନିଆଁ ଧରେ ଡେରିରେ
ଲିଭିବା ନୁହେଁ
ଏତେ ସହଜ।

ଅଙ୍ଗାର ଦେହରେ
ଜଡ଼ି ରହିଥାଏ
ଚିକିମିକି ପ୍ରେମିକା ନିଆଁ।

ନୁହେଁ ସେ ଉଲ୍‌କାପିଣ୍ଡ
କିମ୍ବା ଜୀବନ୍ତ ଆଗ୍ନେୟଗିରିର
ବିରାଟ ସ୍ତୂପ
ସାମାନ୍ୟ ଝୁଲ
ପରମାଣୁ ବୋମାଠାରୁ
ବହୁଗୁଣ ମାରାତ୍ମକ।

ସେ ଗୋଟେ ଛୋଟ ସାପ
କେହି ତା' ପ୍ରତି
ଦିଅନ୍ତିନି ଧ୍ୟାନ
କୋଉ ଛଟକରେ
ମାରିବ ଝେଟ
ଜାଣିବା କଷ୍ଟ।

ବିଷ ତା'ର
ଅଧିକ ଭୟଙ୍କର
କାଟୁ କରେନି
ଗାରୁଡ଼ୀ ମନ୍ତର ।

ଅମୃତ କୁଣ୍ଡରେ
ବୁନ୍ଦାଏ ବିଷ
ସ୍ୱର୍ଗପରି ଘରକୁ
କରିଦିଏ ନର୍କ ।

ସୁବର୍ଣ୍ଣପୁରୀ ଲଙ୍କା ରାଜ୍ୟ
ହୁତୁହୁତୁ ଜଳି
ନିମିଷକେ ହୁଏ ନାରଖାର ।

ଗାନ୍ଧାରୀ ଆଖିର ନିଆଁ
ଭୀଷଣ ମରମ ବେଦନା
ନେଇଥିଲା ଉଗ୍ର ରୂପ
ଖୋଲିଥିଲା ଆଖିପଟି
ହୋଇ ସେ ବ୍ୟଗ୍ର ।

ତା' ବିକଟ ହିଂସା
ସତେ କେଡ଼େ ବେଇମାନ
ନିଜ ପୁଅକୁ ନିଜେ
ଆଖି ଆଗରେ ପୋଡ଼ି
କରିଥିଲା ଭସ୍ମ ।

ମଣିଷର ଈର୍ଷା
ଶୀତଳ ଯୁଦ୍ଧକୁ
କରେ ଆମନ୍ତ୍ରଣ
କହି କପଟ

ମଧୁର ବଚନ
ଭିତରେ ଭିତରେ
ଶତ୍ରୁତାର ଭାବ
କରଇ ଆଚରଣ ।

ଶକୁନି ମାମୁ
ଚକ୍ରାନ୍ତ କରି
କୌରବ ବଂଶକୁ
ଯେମିତି ସମୂଳେ
କରିଥିଲା ବିନାଶ ।

ଆତ୍ମଘାତୀ ବୋମା ସିଏ
ନିଜେ ମରେ
ଅନ୍ୟକୁ ମାରେ
ଡାକିଆଣେ ପ୍ରଳୟ ।

ଈର୍ଷା, ହିଂସାକୁ
ନ କଲେ ଆୟତ
ମଣିଷ ଉପରେ ସେ
ପ୍ରଭୁତ୍ୱ କରେ ବିସ୍ତାର ।

ମନକୁ କଲେ ସଂଯତ
ହିଂସା ହେବ ମହତର
ସଂହାର ବଦଳରେ
ସର୍ଜନା ହୋଇବ ଚମତ୍କାର
ମଣିଷ ଦେବତାରେ
ହେବ ରୂପାନ୍ତର ।



# ମୂଷା

ମୂଷା ଦୁର୍ନୀତିର ମୁଖପାତ୍ର
ଯୋଉଟା ମଣିଷ ପାଇଁ
ଅନୀତି, ବେନିୟମ
ସେଇଟା ତା' ନିମିତ୍ତ
ନୀତି, ନିୟମ
ଲୁଟିବା ତା ଧର୍ମ।

ଗାତ ଖୋଳି
ମାଟି ଗାଳି
ବସ୍ତା କାଟି
ବୋହିନିଏ ଖାଦ୍ୟଶସ୍ୟ
ଶେଷକୁ ଥାଏ ଖାଲି
ଖେପା, ଟୁକୁଡ଼ା ଅଂଶ।

ଦୁର୍ନୀତିର ଚେର ଲମ୍ବା
ଗାତୁଆ ମୂଷାର
ଗାତ ପରି ଲମ୍ବିଥାଏ
ଆଡ଼କୁ ସାଡ଼କୁ।

ଯେତେ ଖୋଳିଲେ ବି
ଶେଷରେ ପହଞ୍ଚି

ମୂଷାକୁ ମାରିବା
ହୋଇଥାଏ ବୃଥା ।

ଗାତରେ ପାଣି ପୂରେଇ
ଧୂଆଁ ଦେଇ
ମୂଷା ବଂଶକୁ
ନିପାତ କରିବା
ନୁହେଁ ଏତେ ସହଜ
ଯେ ପର୍ଯ୍ୟନ୍ତ ମୂଷାଙ୍କ
ମୂଳ ବାସସ୍ଥାନ
ନ ହୋଇଛି ଠାବ ।

ବିଷ ଦେଇ ମୂଷା ବଂଶ
ନିପାତ କରିବା
କାଠିକର ପାଠ
ସେମାନଙ୍କ ଦାଉରୁ କେବଳ
ମିଳେ ସାମୟିକ ଉଦ୍ଧାର ।

ମୂଷା ନୁହେଁ
କମି ଚଲାକ
ସେଥିପାଇଁ ସେ
ପାଠର ଦେବତା
ଗଜାନନ ବାହନ ।

କାର୍ତ୍ତିକକୁ ପଛରେ ପକାଇ
ଗଣେଶଙ୍କୁ ଆଗ
ବୁଲେଇ ଆଣିଥିଲା
ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ।

ଚୁଟିଆ ମୂଷା
ଆହୁରି ଦଗାବାଜ

ଆଖି ଆଗରେ
କୁଟୁକୁଟୁ କରି
କାଟି ପକାଏ
ଲୁଗାପଟା, ବହିପତ୍ର।

ବିଲେଇ ନହେଲେ
ଭଲ ଶିକାରୀ
ମୂଷା ଡେଇଁଡାଇଁ
ଯାଏ ପଳେଇ।

ବିଲେଇ ବିଚରା
ବଲ ବଲ କରି
ରହିଥାଏ ଚାହିଁ।

କ୍ଷେତ, ବାଡ଼ି, ଖଳା, ଘର
ଅମାର, ଗୋଦାମ
ମୂଷାଙ୍କର ଚାଲେ ସେଠି
ପ୍ରବଳ ଜୁଲମ।

କାଳକାଳ ଧରି
ମୂଷା ଅଛନ୍ତି, ରହିବେ
ମଣିଷ ସଭ୍ୟତା ଥିବା ପର୍ଯ୍ୟନ୍ତ
ହେଲେ ମୂଷାଙ୍କ ସଂଖ୍ୟା
ବଢ଼ିଛି ଅତିରିକ୍ତ
ଉତ୍ପାତ ବି ଆଗଠୁ
ହୋଇଛି ଅସହ୍ୟ।

ଧଳା ମୂଷା ସିନା ଦିଶନ୍ତି
ବିଲାତ ବାଲାଙ୍କ ପରି
କଳା ମୂଷା ଭଳି
ସେମାନେ କଦାପି
ନୁହଁନ୍ତି ସାଂଘାତିକ।

ଜଙ୍ଗଲୀ, ପାହାଡ଼ୀ ମୂଷିକ
ବଡ଼ ଭୟଙ୍କର
ଦାନ୍ତଗୁଡ଼ାକ ତାଙ୍କର
କରତ ମୁନ ସମାନ
ତାଙ୍କୁ ଦେଖି
କୁକୁର, ବିଲେଇ
ଲାଞ୍ଜଜାକି ଯା'ନ୍ତି ପଳେଇ।

ପ୍ଲେଗ୍ ରୋଗର ବାହକ
ବ୍ୟାପିଲେ ଭୟାନକ
ଜୀବନନାଶକ ରୋଗ
ମଣିଷ ସମାଜ
ଅକାଳେ ହୋଇବ ବିନାଶ।

କେବଳ ଜଣ ନୁହେଁ
ଗଣ ପାଇଁ ମୂଷା
ହୋଇଥାଏ କାଳ।

ଜନତା ହୋଇଲେ ସଚେତନ
ରାଷ୍ଟ୍ର ହେବ
ନିର୍ମଳ ଭାବମୂର୍ତ୍ତି ସଂପନ୍ନ।

ସୁସ୍ଥ ସୁନ୍ଦର ରହିଲେ
ସମାଜ ପରିବେଶ
ମୂଷା ବିପ୍ଲାତରୁ
ମିଳିବ କ୍ଷାନ୍ତି।



# ଦୁଃଖ

କୁରୁସଭାରେ ଦ୍ରୌପଦୀର ବସ୍ତ୍ରହରଣ
ଅଶୋକବନେ ସୀତାର କଷଣ
ହଉପଛେ ଅଲିଅଳୀ ରାଜନନ୍ଦିନୀ
ଅବା ରାଜରାସ୍ତାର ନିରଶ୍ରୟା ଭିକାରୁଣୀ
କରେ ନାହିଁ ଦୁଃଖ କେବେ ପକ୍ଷପାତ
ଆଗତୁରା ବଢ଼ାଏ ସଂପର୍କର ହାତ।

ନିରିମାଲ୍ୟ ଟେକି ଦେଇ
କେହି ପୁଣି
ବାଟେଘାଟେ ଭେଟ ହୋଇ
ଦୁଃଖ ସଙ୍ଗେ ବସିଲେ ସଙ୍ଗାତ
ପ୍ରାଣଠାରୁ ବଳି ସିଏ
ସଙ୍ଗାଳେ ଡାକି ମିତ।

କିଏ କହେ କର୍ମଫଳ
କିଏ ଭାବେ ଭାଗ୍ୟ ମନ୍ଦ
ଧନ୍ଦି ହେଲେ ଜୀବନଟା

ଛନ୍ଦି ହୋଇଯାଏ
ବୁଢ଼ିଆଣୀ ଜାଲରେ ଯେମନ୍ତେ
କୀଟ ପଡ଼ି ଛଟପଟ ହେଉଥାଏ।

ଆଦରେ ଯେ ତାକୁ
କରଇ ସତ୍‌କାର
ସେଇ ହିଁ ଲଭଇ
ସ୍ୱର୍ଗୀୟ ବେଭାର।

ତା'ପରି ସ୍ୱାର୍ଥହୀନ
ଅନ୍ତରଙ୍ଗ ସାଥୀ
ଜୀବନ ରଥର
ଏକମାତ୍ର ସଫଳ ସାରଥି।

ଝୁଣ୍ଟିଲେ ଶିଶୁ ଚାଲି ଶିଖଇ
ପହିଲି ଯୁଦ୍ଧରେ ଭୀମ ହାରଇ
ରାବଣ ବିହୁନେ
ରାମଙ୍କୁ କିଏ ବା ଚିହ୍ନେ
ରାତି ବିନା ଯେସନେ
ଦିନର କୋଉ ମଜା ମିଳେ!

ଆପଣାର ଲୋକ ପରି
ଆକଟ କରଇ ଦୁଃଖ
କଷଟି ପଥରରେ
ପରଖୁ ଥାଏ ବରାବର।

ଧୈର୍ଯ୍ୟର ସେତୁବନ୍ଧ
ଯଦି ନ ଟଳେ
ଇନ୍ଦ୍ରପଦ ମିଳିବା
କିଛି ଅସମ୍ଭବ ନୁହେଁ।

ଜୟ, ପରାଜୟ ଜୀବନର
ଏକ ଏକ ସୋପାନ
କରିଗଲେ ସବୁ ଅତିକ୍ରମ
ମିଳଇ ଜୀବନ ଶୀର୍ଷସ୍ଥାନ।

ଡରିଗଲେ ଦୁଃଖକୁ
ତୁଚ୍ଛା ଜିଇବା ସାର
ବିଲୁଆ, କୁକୁର ଜୀବନ ସମ।

ମୁକାବିଲା କରିବାକୁ ହେଲେ ବିପଦ
ଦରକାର ସିଂହର ସାହସ
ହୋଇପାରେ ମରଣ
ଧନ୍ୟ ହେବ ଜୀବନ।

ବଞ୍ଚିବା ମରିବା ଖାଲି
ବାଲିଘର ଖେଳ
ପାଦଚିହ୍ନ ଛାଡ଼ିଗଲେ
ସେଇ ହେବ ପୁଣ୍ୟ।

ମାନ ଅପମାନ
ଆପେକ୍ଷିକ ଶବ୍ଦ ସମ୍ଭାର
ସ୍ରଷ୍ଟାର ବିରୁଦ୍ଧାଚରଣ କରିବା
କର୍ତ୍ତବ୍ୟ ନୁହଁଇ ମାନବର।

ହାତ ହଲେଇ ଚାଲିଲେ
ଝଟଝଟ ପାଦ ପଡ଼େ
ବାଟ ଯାଏ କମି।

ହାତ ଟେକି ଦେଲେ
ଖାଲ ଖମା ଟପି ଯିବା
ଗୋଡ଼କୁ ଲାଗିବନି ଥକା।

ବାଘ ଛେଳିକୁ ଏକ ସଙ୍ଗେ ନେଇ
ନଈ ପାରି ହେବାରେ
ଥାଏ ବାହାଦୁରି ।

ଦେଇଥିଲେ ପାଇ
ଚିରନ୍ତନ ବାଣୀ
ବୁଡ଼ି ନାହିଁ ବୁଡ଼ିବ ନାହିଁଟି
କାହାରି ପଣି ।

ଏ ଜନମେ ନ ହେଲେ
ଆର ଜନମରେ
ହିସାବ ରକ୍ଷକ ସୁଧମୂଳ ସହ
ଫେରାଇବ ଗଣି ଗଣି ।



# ସପନ

ସପନ
ସେ ତ ଭୋଦୁଅ ଜହ୍ନ
ନିର୍ମଳ ଆକାଶରେ
ପଡ଼ିଥାଏ ତୋଫା ଜହ୍ନ
ଛିଣ୍ଡାଛିଣ୍ଡା ବାଦଲ ଫାଙ୍କରେ
ଉଙ୍କି ମାରୁଥାଏ ଘୋଡ଼ା ଘୋଡ଼ା ଜହ୍ନ
କଳାହାଣ୍ଡିଆ ମେଘ ଘୋଟିଲେ
ଛପି ଯାଉଥାଏ ଜହ୍ନ ।

ଆକାଶୁ କଦାପି ହଜେନି ଜହ୍ନ
ମନରୁ କେବେ ମରେନି ସ୍ୱପ୍ନ
ଶୁକ୍ଳ ଆଉ କୃଷ୍ଣ ପକ୍ଷ
ଜହ୍ନକୁ କରନ୍ତି ନିୟନ୍ତ୍ରଣ

ମନର ଭାବ ସଦା
ସ୍ୱପ୍ନକୁ କରଇ ନିମନ୍ତଣ।

ସବୁ ସ୍ୱପ୍ନ ଆଣେନି ପୂନେଇଁ
ବେଳେବେଳେ ଅମେଇସିଆ
ପଶିଆସେ ଧସେଇ।

ସ୍ୱପ୍ନ ଦେଖିବାକୁ
କେହି କେବେ ଦିଏନି ଏଡ଼ାଇ
ସ୍ୱପ୍ନ ଥରେ ମରିଗଲେ
ମଣିଷ ହୋଇଯାଏ ଫସିଲ୍।

ସପନ ଦେଖିବାକୁ
ଦରକାର ରାତି
ଦିବାସ୍ୱପ୍ନ କାଳେ କାଳେ
ମରୀଚିକାର ଭେଳିକି।

ଆଶାବାଦୀର ସ୍ୱପ୍ନ
ଶକ୍ତ ଆଶାବାଡ଼ି
ଭବିଷ୍ୟତ ଆଶା
ବାସ୍ତବକୁ ଛାଡ଼ି
ମସ୍ତବଡ଼ ଖାମ୍‌ଖିଆଲ।

ଗୋଲାପି ସ୍ୱପ୍ନ ସିନା
ଦେଖାଏ ଗୋଲାପ
ମାଟିର ଉର୍ବରତା
ଗୋଲାପକୁ ଦେଇଥାଏ
ଆକାର ପ୍ରକାର।

ସେ ନୁହେଁ ଚିନାମାଟି
ନିରୋଳା ଖତମାଟି

ଜିଆ, ଜୀବାଣୁ
ସାଲୁବାଲୁ ହେଉଥାନ୍ତି
ମାଟିକୁ ଗାଳି, ଖୋଳି
ଜାରାଖାରା କରୁଥାନ୍ତି।

ଦୁଃଖହୀନ ଜୀବନ
ଦେଖେ ସିନା ସପନ
ନ ଥାଏ ତହିଁରେ
ଦୁକୁଦୁକିର କମ୍ପନ
ଡାକିଆଣେ ଦୁଃସ୍ୱପ୍ନ
ନିମିଷକ ଭୂକମ୍ପେ
ଆକାଶଛୁଆଁ କୋଠା
ହରାଏ ଯେମିତି ଚିହ୍ନବର୍ଣ୍ଣ।

କଷଣ ପେଷଣ ବିନା
ସଫଳତା ମିଳେ ଶୂନ
ସୁଖ ବି ନୁହେଁ ଚିରନ୍ତନ
ପ୍ରାସାଦନିବାସୀ ପାଇଁ
ସୂର୍ଯ୍ୟ, ଚନ୍ଦ୍ର, ତାରା
ସାତ ସପନ।

କୁଡ଼ିଆବାସୀ ଦେଖେ
ଦିନରାତିର ଚକାଭଉଁରି ଖେଳ
ଖରା, ବରଷା, କାକରରେ
ବିତାଏ ଜୀବନ।

ସୂର୍ଯ୍ୟ, ତାରାକୁ ସେ
କରେନି ଭୟ
ମଣେନି ହେୟ

ସାଙ୍ଗସାଥୀ ପରି
କରିନିଏ ପ୍ରିୟ ।

ଦରଦୀ ମନ ନେଇ
ଦେଖେ ତାଙ୍କ କାରବାର
ପ୍ରକୃତି, ପ୍ରବୃତ୍ତିକୁ ସାଥି କରି
ଲକ୍ଷ୍ୟ ପଥେ ଚଳିଲେ
ସ୍ୱପ୍ନ ହୁଏ ସାକାର ।



# ପାଦୁକା

ଜୀବନଯାକ ମଣିଷର
କରଇ ସେବା
ପାଇଖାନାରୁ ରାଜଦରବାର
ପୃଥିବୀରୁ ମହାକାଶ
ଯୁଦ୍ଧକ୍ଷେତ୍ର, ବଣଜଙ୍ଗଲ
ସବୁଠି ପାଦୁକା ଲୋଡ଼ା
ଅନ୍ୟ ନାମ ଯା'ର
କଠଉ, ଜୋତା।

ମଣିଷ ତା'ଠାରୁ ପାଉ ପଛେ
ଯେତେ ସୁଖ ସୁବିଧା
ଦେଇଥାଏ ତାକୁ ଅଛବର ଆଖ୍ୟା।

ଠାକୁର ଘରେ
ଜୋତା ପିନ୍ଧି ପଶିଲେ

ମଣିଷକୁ ଲାଗେ ପାପ
ମନ୍ଦିର ହୁଏ ଅପବିତ୍ର ।

ଚପଲମାଳ ବେକରେ ପିନ୍ଧାଇ
ଜୋତାରେ ବାଡ଼େଇ
ଅନ୍ୟ ଉପରକୁ
ଜୋତା, ଚପଲ ଫିଙ୍ଗି
ରାଗ ଶୁଝେଇ ଦଉ ଅପମାନ ।

ଜଗତସାରା ଲୋକ
ଚପଲର ଏ ଘୃଣ୍ୟ କାରବାରକୁ ଦେଖାଇ
ସୃଷ୍ଟି କରି ବାଦବିବାଦ
ହୁଅନ୍ତି ଆଲୋଚିତ ।

ଚପଲ, ଜୋତା କ'ଣ
ସତେ ଏତେ ଘୃଣିତ
ନାହିଁ ତା'ର କିଛି ମହତ !

ତା'ଠାରୁ ଆମେ
ସେବା ନେଲାବେଳେ
କାହିଁକି ହେଉନୁ କୁଣ୍ଠିତ !

ମଣିଷର ହୀନମନ୍ୟତା
ମଣିଷକୁ କରେ ଲାଞ୍ଛିତ
ଅପମାନ ଦେଇ
କେହି କାହାଠାରୁ
ଲଭେନି ଶ୍ରେଷ୍ଠତ୍ୱ ।

ରାଜମୁକୁଟ ପିନ୍ଧାଏ
ପାଣ୍ଡେଇ ଭଳିକିଭଳି

ନ ଥିଲେ ମାତ୍ର ପାଣ୍ଡେଇଟିଏ
ରାଜମୁକୁଟ ମିଳିବା
ହୋଇଥାଏ ଭେଳିକି ।

ଜୋତା କେବଳ ମଣିଷକୁ
ଦିଏନି ଦାନା, କନା
ଦେହ, ମନକୁ ରଖେ
ସୁସ୍ଥ, ସତେଜ
ଭେଟିଦିଏ ଆଣି
ରାଜ ସିଂହାସନ ।

କୈକେୟୀ ନନ୍ଦନ
ତୁଚ୍ଛ କରି ରାଜ ଆସନ
ବର୍ଷ ବର୍ଷ ଧରି
ରାମଙ୍କ ପାଦୁକା
କରିଥିଲେ ପୂଜନ ।

କଥଉ ପୂଜା ପରଂପରା
ଭାରତେ ପ୍ରାଚୀନ
ପାଦ ବିନା ଶରୀର
ବିବାକେ ମୂଲ୍ୟହୀନ ।

ପାଦୁକା ପ୍ରତି ରହିଲେ ଭକ୍ତିଭାବ
ସଂକୀର୍ଣ୍ଣ ମନୋଭାବ
ଅଚିରେ ହେବ ଅବସାନ ।

ଛୁଆଁଅଛୁଆଁ, ଉଚ୍ଚନୀଚ ଭେଦ
ମନରୁ ଆପେ ଆପେ
ହୋଇଯିବ ଦୂର ।

ପାଦୁକାକୁ ସମ୍ମାନ
ଭରତଙ୍କ ଭ୍ରାତୃତ୍ୱ ପ୍ରେମର
ଅମଳିନ ନିଦର୍ଶନ
ସମଗ୍ର ଧରାପୃଷ୍ଠକୁ ଯାହା
ନିବିଡ଼ ଭାଇଚରାର ଡୋରିରେ
କରେ ଅତୁଟ ବନ୍ଧନ ।



# ସେତୁବନ୍ଧ

ପୁତ୍ର କ'ଣ ପରୀକ୍ଷା କରେ
ଦେହରେ ତା' ପିତାର ଜିନ୍
ମାତା କେବେ ମୁକ୍ତ କଣ୍ଠେ କହିପାରେ
କାହାର ଥିଲା ସେ ଶଯ୍ୟାସଙ୍ଗିନୀ
ବେଦି ଉପରେ ଅଗ୍ନି
ସ୍ୱୀକୃତି ଦେଇଥାଏ ପତିପତ୍ନୀ।

ରଘୁକୁଳତିଳକ ଭାରତେ
ମର୍ଯ୍ୟାଦା ପୁରୁଷୋତ୍ତମ ନାମେ ଖ୍ୟାତ
ଏ ମାଟିରେ କେଉଁକାଳୁ ପୂଜିତ
ରାମ ସ୍ଥିତି ନେଇ କି ସକାଶେ
ଏତେ ସନ୍ଦିହାନ।

କିଏ କହେ ଆମେରିକା ସିଏ
ଇଏ ମାଟି ଭାରତ
ଆମେରିଗୋଭେସ୍‌ପୁସି ଆଉ ଭରତଙ୍କ
ନାମେ ଦେଶଦ୍ୱୟ ନାମିତ।

ଇତିହାସ, ପୁରାଣ ଚରିତ୍ର
ମୋଟେ ନୁହେଁ ଭିନ୍ନ
ଇତିହାସର ଇତିହାସ
ଅଟଇ ପୁରାଣ
ସତ୍ୟର ଦିଅଇ ସନ୍ଧାନ।

ବାଲ୍ମିକୀଙ୍କ ରାମାୟଣ କଥା
ଭାରତୀୟତାକୁ କରେନି ଅନ୍ୟଥା
ପୁରାଣ ବର୍ଣ୍ଣିତ ଅଯୋଧ୍ୟା, ଲଙ୍କା
କେଉଁ ସୂତ୍ରେ ପୁଣି କଳ୍ପିତ!

ରାଇଟ୍ ଭାଇ ଦୁହିଁଙ୍କ ସାଧନେ
ଉଡ଼େ ଆଜି ବ୍ୟୋମଯାନ
ଅସମ୍ଭବ କାହିଁ ତେବେ
ରାମାୟଣର ପୁଷ୍ପକ ବିମାନ!

ବୃକ୍ଷ ଆଉ ବୀଜ ମଧ୍ୟେ
କିଏ ସେ ପ୍ରଥମ
ବିଚାର ନୁହଁଇ ସୁଗମ
କଳ୍ପନା, ବାସ୍ତବର ଯେରା ପୀରତି
କାଳେ କାଳେ ଅଚ୍ଛେଦ୍ୟ, ଅଭେଦ୍ୟ
ବିଜ୍ଞାନୀ ମନୁଷ୍ୟ କେମିତି ବା
ନ ମଣିବ ହାସ୍ୟାସ୍ପଦ!

ବାନରସେନାଙ୍କ ଯୋଗେ
ମହାସାଗରେ ଦୃଢ଼ ବନ୍ଧ ନିର୍ମିତ
ମହଣ ମହଣ ପଥରେ
ଏ ଦେଶ ମନ୍ଦିର ଗଠିତ
ନାସା କହେ କିନ୍ତୁ
ସେତୁବନ୍ଧ ନୁହେଁ ମନୁଷ୍ୟକୃତ।

ପର୍ବତରେ ବନ୍ଧା ରାମସେତୁ
କି ପାଇଁ ବିଶ୍ୱାସ ରହିତ
କେଉଁ ଅର୍ଥେ ତେବେ ଶୈଳରାଜି
ସେତୁ ସ୍ଥାନେ ଦୃଶ୍ୟମାନ ।

ବିଶ୍ରବା ଋଷି ସୁତ
ମନ୍ତ୍ର ଉଚ୍ଚାରଣେ
ହୋଇଥିଲା ସେତୁବନ୍ଧ ପୂଜନ
କୌଶଲ୍ୟା ପୁତ୍ର ନିମନ୍ତ୍ରଣେ
ରାବଣ ପାଳିଥିଲା ସ୍ୱଧର୍ମ ଆଚରଣ ।

ଦୁଇ ଭୂଖଣ୍ଡକୁ ସେତୁ
ଦେଇଥିଲା ସିନା ମିଳେଇ
ମସ୍ତିଷ୍କରୁ ମନ ଦୂରେଇ ରହିଲେ
ଶତ୍ରୁ ଭାବ ଉପୁଜଇ ।

ଭାଗବତକାର କହଇ
ବିଶ୍ୱାସ ମୂଳେ ଏ ଜଗତ
ସେତୁବନ୍ଧ ଲାଗି କି କାରଣେ
ଏତେ ଭିନ୍ନ ମତ ।

■■

## ହୃଦୟ

ହୃଦୟର ନାହିଁ ଆକାର
ସେ ଗୋଟେ ପାତର
କି ଧାତୁରେ ଗଢ଼ା
କେତେ ଭାଗମାପ
ସେ ସବୁ ଗୁମର ।

ଭରି ରହିଥାଏ ସେଥିରେ
ସ୍ନେହପ୍ରେମ, ଦୟାକ୍ଷମା
ଆହୁରି ଅନେକ
ମଣିଷପଣିଆ ଗୁଣବତ୍ତା ।

ମନୁଷ୍ୟ ଏହାକୁ
କରି ଧାରଣ
ପାଇଥାଏ ଦୁର୍ଲଭ ଜୀବନ ।

ମନରେ ଲାଗିଲେ ଆଘାତ
କଂସା ପାତ୍ର ପରି
ଝାଇଁ ଝାଇଁ କରି
ହୃଦୟ ହୁଅଇ ବିଦୀର୍ଣ୍ଣ।

ମଣିଷର ଦେହ
ନୁହଁଇ କାଠ ପଥର
ନିପଟ କଞ୍ଚା ଶରୀର
ଆମ୍ଭାକୁ ବାଧିଲେ
ସହସା ବିଚଳିତ ଲାଗିବା
କିଛି ନୁହେଁ ଅସ୍ୱାଭାବିକ।

ନିଶ୍ଚଳ ପାଣିରେ
ଟେକାଟାଏ ପଡ଼ିଲେ
ଯେମିତି ସୃଷ୍ଟି ହୁଏ
ତରଙ୍ଗର ଚକ୍‌କର।

ହୋଇଲେ କାଚପାତ୍ର
ଭାଙ୍ଗିବାକୁ ହୃଦୟ
ନେବନି ସମୟ
କ୍ଷଣେ ମାତ୍ର।

ମନ ହେଲେ ଚୂନା
ମଣିଷ ହୁଅଇ ନୀଚମନାଃ
ଧାରଣ କରଇ
ହିଂସ୍ର ପଶୁ ରୂପ
ଅନ୍ୟକୁ ଦିଅଇ ଆଘାତ।

ମନଃକଷ୍ଟ, ଅନୁତାପରେ
ହେଲେ ଅଭିଭୂତ

ବରଫ ଖଣ୍ଡ ପରି
ତରଳି ତରଳି
ମନୁଷ୍ୟ ନିଜକୁ କରେ ନିଃଶେଷ।

ରସପାତ୍ର ସମ
ଧଇଲେ ହୃଦୟ
ଅପମାନ ପାଇ
ବେଦନାର ସ୍ୱର
କିଛିକ୍ଷଣ ଉଠି
ମରମେ ଯାଏ ମରି।

ରସର ବାସନକୁସନ
ପଡ଼ିଲେ କରେନି
କାନଫଟା ଶବଦ
ଭାଙ୍ଗେନି ଏତେ ସହଜ
ହୋଇଥାଏ ଯାହା ଚେପା
ଠୁକେଇ ଦେଲେ ଟିକେ
ହୋଇଯାଏ ଆଗପରି
ପୂରା ଗୋଟା।

ନିନ୍ଦା, ଭର୍ତ୍ସନା
ଜୀବନ ତମାମ ଖେଳର
ଏକ ଏକ ଛୋଟ ଦୁର୍ଘଟଣା।

ଗଣ୍ଠି ପକେଇ
ଧଇଲେ କଥା
ମଣିଷ ହୁଏ
ଧର୍ମଛଡ଼ା, ବାଟହୁଡ଼ା
ଭୋଗେ ଦୁର୍ଦ୍ଦଶା।

ରାତି ପରେ ଦିନ ଆସେ
ସବ୍ରାତ ଗଛରେ
ନେହୁଆ ଫଳେ।

ପ୍ରତିହିଂସା, ଅହିଂସା
ଉଭୟଙ୍କ ପଥଭିନ୍ନ
ଲକ୍ଷ୍ୟ କିନ୍ତୁ ଏକ
ଅସହିଷ୍ଣୁ ପ୍ରତିଦ୍ୱନ୍ଦ୍ୱୀ
ଲଭେ ଦୁର୍ଯ୍ୟୋଧନ ପରାଭବ।

ସହିଷ୍ଣୁ ପ୍ରତିଯୋଗୀ
ଭୋଗି ଲାଞ୍ଛନା ଯାତନା
ଶେଷରେ ଉଡ଼ାଏ
ମାନ, ସମ୍ମାନର ବାନା।

ହୋଇଲେ ସ୍ଥିତପ୍ରଜ୍ଞ
ଚାରିଭାଇ, ପତ୍ନୀକୁ ଛାଡ଼ି
ସତ୍ୟନିଷ୍ଠ ଯୁଧିଷ୍ଠିର ଏକା
ଯାଇପାରେ ସ୍ୱର୍ଗଧାମ।

■■

# ଧର୍ଷଣ

ଶୁଣିଲେ ତା’ ନାଁ
ଶୀତେଇ ଉଠେ ଦେହ
ଟଳଙ୍କୁ ହୁଏ ମୁଣ୍ଡ
ହତ୍ୟା, ରାହାଜାନିଠୁଁ କଦାକାର
ଏଡ୍‌ସ, କ୍ୟାନସରକୁ ବଳି ଭୟଙ୍କର
ଇଚ୍ଛା ବିରୁଦ୍ଧ ଯୌନ ସଂପର୍କ
ପରିଣତି ଅତି ଜଘନ୍ୟ
ରୂପ ନିଏ ଧର୍ଷଣ।

ନାହିଁ ତା’ର ବିବେକ
ବୁଝେନି ମନ
ଦେଖେନି ବୟସ କି ଅବସ୍ଥା
ସେ ଏକ ନଗ୍ନ, ବିକଳ
ଯୌନ ଚେତନା
ଜୋର୍‌କରି ନାରୀକୁ
କାମ ପାଗଳ ନିବାରଣ କରେ
ତା’ ଯୌନ ତୃଷ୍ଣାକୁ।

ଧର୍ଷକ ସ୍ୱଭାବ କୁତ୍ସିତ
ନାରୀ ମାଂସର ସେ ଖାଦକ

ଯୌନକ୍ଷୁଧା ତା'ର ଅତୃପ୍ତ
କ୍ଷୁଧାର୍ତ୍ତ ହିଂସ୍ର ବ୍ୟାଘ୍ରଠାରୁ
ସହସ୍ର ଗୁଣ ମାରାତ୍ମକ ।

ମନଲୋଭା ମିଥ୍ୟା ଆଶ୍ୱାସନା
ମିଠା ମିଠା ସରୁ କଥା
କପଟ ହସ
ଶିକାର ନିମିତ୍ତ
କରଇ ସେ ଥୋପ
ମାୟା ଜାଲରେ ତା'ର
ଥରେ ଗଲି ଫସି
ମୁକୁଳିବା ଭାରି ମୁସ୍କିଲି ।

ଅନୁନୟ, ବିନୟ
ଆକୁଳ କ୍ରନ୍ଦନ
ତା' ପାଶେ ନିଷ୍ଫଳ
ନାରୀ ଉପଭୋଗ କେବଳ
ହୋଇଥାଏ ତା' ଜୀବନଧର୍ମ ।

ମିଳିଗଲେ ସୁଯୋଗ
ନ ବିଚାରି ଆଗପଛ
ନ କରି କାଳବିଳମ୍ବ
ନାରୀକୁ ଦିଏ ସେ
ଯୌନ ଉତ୍ପୀଡ଼ନ ।

ଛେଳି, କୁକୁଡ଼ାର ଚମଡ଼ା ଉତାରି
ମାଂସାଶୀ ମନୁଷ୍ୟ
ଆଗ୍ରହେ କରଇ ଯେପରି
ଭୋଜିଭାତ ମଉଜ ।

ମେଣ୍ଟିଗଲେ ଭୋକ
ଫିଙ୍ଗିଦିଏ ହାଡ଼କୁ
ଅଳିଆଗଦାକୁ।

ବାସ୍ନା ପାଇ
ଆସନ୍ତି ଧାଇଁ
କୁକୁର, ବିଲେଇ
ପଲପଲ ହୋଇ
ସେମାନଙ୍କ ଜୁଲମ ଚାଲେ
ଦେହାବଶେଷ ମାଟିରେ ମିଶି
ହେବାଯାକେ ଧୂଳି।

ଯଦିବା ବଞ୍ଚିରହେ ନିର୍ଯାତିତା
ଧର୍ଷିତା ନାମେ ହୁଏ ପରିଚିତା
ଆହା ଚୁ ଚୁ
ମିଳେ କିଛି ଆଗେ ଆଗେ
ପରେ କହନ୍ତି ଲୋକେ
ଛି ଛି
ଚିରଦିନ ଲାଗି
ସମାଜର ସବୁ ବାଟ
ତା' ପାଇଁ ହୋଇଯାଏ ନିବୁଜ।

ନାରୀ ନିର୍ଯାତନା
ମୁକାବିଲା ସକାଶେ
କୁମ୍ଭୀର କାନ୍ଦଣା
କାନ୍ଦନ୍ତି ବଡ଼ ପଣ୍ଡାଏ
ସନ୍ନିଧାନେ ନିୟମ କରି
ମୁଣ୍ଡରୁ ଦିଅନ୍ତି
ବୋଝ ଖସେଇ।

କଚେରି ଅଦାଲତେ
ଆଇନର ଗଳାବାଟେ
ନ୍ୟାୟ ଖେଳୁଥାଏ
ଲୁଚିଛପି ଲୁଚକାଳି।

ଲୋକଙ୍କ ପାଟିରେ
ନ ଥାଏ ବାଡ଼ବତା
କହି ବୁଲନ୍ତି
ଗୋଟାଏ ହାତରେ
ବାଜେନି ତାଳି।

ଧର୍ଷକ ନିଶ ମୋଡ଼ି
ଛାତି ଫୁଲେଇ
ସମାଜରେ ବୁଲେ
ପୌରୁଷ ଦେଖାଇ।

ଧର୍ଷିତା ଭୋଗୁଥାଏ
ଜୀବନ୍ତ ମରଣର ଦୁର୍ଗତି
ବାରନାରୀ ନାମେ
ଅପବାଦ ରଟି
କବାଟ କଣରେ ପଡ଼ିଥାଏ
ନିଜ ଲୁହକୁ ନିଜେ ପିଇ।

ଲୋକଙ୍କ ମାନସିକତାରେ
ନ ଆସିଲେ ପରିବର୍ତ୍ତନ
ଧର୍ଷଣ କଦାପି
ହେବନି ମୂଳୋତ୍ପାଟନ।



# ଜୀବନ

ଜୀବନ ଏକ
ପ୍ରବହମାନ ନଦୀ
ପାହାଡ଼, ମାଳଭୂମି,
ବରଫାବୃତ ପର୍ବତ
ହୋଇପାରେ ତା' ଉତ୍ପତ୍ତି ସ୍ଥାନ।

ଗତି ତା'ର ଆଗକୁ
ନୁହେଁ କିନ୍ତୁ ଉପରକୁ
ବହୁଦୂର ଅଟେ ନେଳୀ ଆକାଶ
ହାତପାହାନ୍ତାରେ ନୀଳ ପାରାବାର
ନୁହଁଇ ସେ ଆକାଶ ଗଙ୍ଗା
ଧରାର ପାବନୀ ଗଙ୍ଗା।

ନଈ ଗତି କରେ
ଅଙ୍କାବଙ୍କା ଧାରେ

ପଥ ନୁହେଁ ଖାଲି ସମତଳ
ପଡ଼ିଲେ ପଥୁରିଆ ସ୍ଥାନ
ଅଟକେନି ନଈର ଧାର
ବାଟ କାଟିବାକୁ କରେ କସରତ
ଚେଷ୍ଟାକରେ ବାରବାର
ବଙ୍କେଇ ମାରେ ତା' ତୀର
ଧୀରେ ଧୀରେ ତୀବ୍ର ହୁଏ
ପାଣିର ଗାର।

ସ୍ରୋତରେ ପ୍ରଖର ବେଗ
ପାଇ ନରମ ମାଟି
ସୃଷ୍ଟି କରେ ଗଭୀର ଗଣ୍ଡ
କଳା ଘୁମର ପାଣି
କାଟୁଥାଏ ଭଉଁରି
ଉଠୁଥାଏ ଭୁଡ଼ୁକା
ମାଛଙ୍କ ନିର୍ଭୟ ସ୍ଥଳୀ
ବୁଡ଼ାଳି ନ ହେଲେ ପୋଖତ
ଧରିବାକୁ ସେଠି କେହି କରିବେନି ସାହସ।

ବାଲିଚର ଢିପ ଠାଏ ଠାଏ
ନଦୀ ଗର୍ଭେ
ଗଢ଼ି ଉଠିଥାଏ ଛାଏଁ ଛାଏଁ
ବାଲି ବିନା ସେ ସ୍ଥାନେ
ଦେଖିବାକୁ ଆଉ ମିଳେନି କିଛି।

ଖାଲଖମା, ପାହାଡ଼ପର୍ବତ
ପାର୍ ହେଇ ସବୁତକ
ବହିଯିଲେ ନଈ ଆଗକୁ
ଲକ୍ଷ୍ୟ ତା'ର ସମୁଦ୍ର ବୁକୁ।

ଜୀବନର ନାହିଁ ଆଦି ଅନ୍ତ
ଜୀବନ ରେଖା
ନୁହଁଇ ସରଳ, ସିଧା
ଅନୁକୂଳେ, ପ୍ରତିକୂଳେ
ଲଗାଲଗି ହୋଇ
ଜୀବନଧାରା ବହଇ ସବୁବେଳେ।

ଚଲାପଥୁ ଅନୁଭୂତି
ଆଦରେ ଆଣିଲେ ଗୋଟେଇ
ବିପଦୁ ମୁକୁଳିବାର
ରାସ୍ତା ଦିଏ ଦେଖେଇ
କର୍ତ୍ତବ୍ୟରୁ ରହିଲେ ନିବୃତ
ଜୀବନଟା ମରୁଭୂମି ପାଲଟିବା ନିଶ୍ଚିତ।

ନ ବିଚାରି ସହଜ, କଷ୍ଟ
ହିସାବ ନ କରି
ଲାଭ, କ୍ଷତି
ସତ୍ କର୍ମରେ
ନିରନ୍ତର ରହିଲେ ରତ
ଜୀବନ ଲଭିବ ମହାନନ୍ଦ।



# ଆଭିଜାତ୍ୟ

ମୂର୍ତ୍ତି ବାଘ ଦିଶେ ସୁନ୍ଦର
ବାହାବା ପାଏ ପ୍ରଚୁର
ଶିଳ୍ପୀ ମାରେ ବାହାଦୁରି
ବାଘ ନୁହେଁ ଯାଇତାଇ
ସନ୍ତୋଷୀମା'ଙ୍କ ବାହନ।

ଖାଏନି ମାଉଁସ
ଦେଖିନି ଜଙ୍ଗଲ
ଭୋଗରାଗ ତା' ଆହାର
ମନ୍ଦିରେ କରେ ବିହାର।

ପୁରୁଷ ପୁରୁଷ ଧରି
ଦେବୀଙ୍କ ସେବକ
ଠାକୁରାଣୀ ବାଘ
ଆଭିଜାତ୍ୟର ନିଦର୍ଶନ।

ଆଭିଜାତ୍ୟ କେତେ ସତ ମିଛ
ଜାଣେ ଅଭିଜାତ ମଣିଷ
ଦେବୀଙ୍କ ପାଖରୁ
ହଟିଗଲେ ମୂରତି

ପିଲାମାନେ ବାଘପିଠିରେ କୁଦି
ନାଚ କରନ୍ତି ବସି
ଥେଇ ଥେଇ।

ପଡ଼ିଲେ ଟୋପାଏ ପାଣି
ରଙ୍ଗ ଯାଏ ଧୋଇ
ବାଜିଗଲେ କିଛି
ମୂର୍ତ୍ତି ଯାଏ ଭାଙ୍ଗି।

ଆଭିଜାତ୍ୟ ଗୋଟେ
ମିଛ ଅହମିକା
ମଣିଷକୁ ମଣିଷଠାରୁ
ଦିଅଇ ଦୂରେଇ।

ଖାତିରି ଧରି
ବଞ୍ଚିଥିବା ମଣିଷ
ନିଜ ହାତରେ ନିଜେ
ଚଉଦ ପା।

ସାଧାରଣ ଲୋକେ ଦିଅନ୍ତି
ଉପର ଠାଉରିଆ ସମ୍ମାନ
ଭଲପାଇବାରେ ନ ଥାଏ
କାଣିଚାଏ ମାତର ଆଗ୍ରହ।

ଅଭିଜାତ ମଣିଷ
ପରିଣତିରେ ଲଭେ
ଭଙ୍ଗା ମୂରତିର ଆଦର।



# ସଂପର୍କ

ରାଜା-ରାଣୀ, ପ୍ରେମିକ-ପ୍ରେମିକା
ସ୍ୱାମୀ-ସ୍ତ୍ରୀ, ଭାଇ-ଭଉଣୀ
ବାପ-ପୁଅ, ମାଆ-ଝିଅ
ରାଜା-ପ୍ରଜା, ଯାଜକ-ଯଜମାନ
ସର୍ବେ ସଂପର୍କର
ଏକ ଏକ ସୂତା ଖିଅ।

ହୋଇଗଲେ ଟିକେ ଅଡୁଆ
ଗଣ୍ଠି ଖୋଲିବା କଷ୍ଟିଆ
ମନଟା ସୂତାଠୁ ସରୁଆ
ଜୀବନ ଲାଗେ ହୁତାଶିଆ।

ମାଳର ଶୋଭା ବଢ଼େ
ଗୁନ୍ଥା ମାଳିରେ
ସୂତା ପାକଳ ନ ଥିଲେ
ଛିଡ଼େ ଅଚିରେ।

ସଂପର୍କ ନୁହେଁ
ଡାଳିପକା ମନଯୋଡ଼ା
ଅନ୍ତରେ ବଢ଼ାଏ
ପ୍ରେମର ବନ୍ଧନ
ତପଃ ବଳେ ମିଳେ
ସ୍ୱର୍ଗୀୟ ପୁଷ୍ପ
ପାରିଜାତର ସନ୍ଧାନ ।

ଇନ୍ଦ୍ରପଦ ନୁହେଁ ଗୋଟିଏ ଦିନର
ନିର୍ବାଚନ ବିଧିବିଧାନ
ମନୋନୀତ ହୋଇ ଇନ୍ଦ୍ର କରନ୍ତି
ଆତ୍ମସଂଯମ ଶାସନ
ସରଗ ରାଇଜେ କେବଳ ମିଳଇ
ସଂପର୍କର ଅତୁଟ ବନ୍ଧନ ।

ବୁଦ୍ଧତ୍ୱ ନିମିତ୍ତ ଗୌତମ
ନେଇଥିଲେ ଜନ୍ମ ଅନେକ
ନିବିଡ଼ ହୋଇଥିଲା
ଧରା ସହ ତାଙ୍କ ସଂପର୍କ
ବୋଧିଦ୍ରୁମ, ବୁଦ୍ଧଗୟା
ବୁଦ୍ଧଦେବ ସ୍ମୃତି ସଂଯୋଗର
କରଇ ମଧୁର ରୋମନ୍ଥନ ।

ସମ୍ବନ୍ଧର ନାହିଁ ଆଦି ଅନ୍ତ
ଦେଖେନି ସେ ଅତୀତ, ଭବିଷ୍ୟତ
ସର୍ବଦା ଥାଏ ନିତ୍ୟନୂତନ
ନେବାଠାରୁ ଦେବାକୁ କରିଲେ ପସନ୍ଦ
ସଂପର୍କ ହୁଅଇ ଦୃଢ଼ୀଭୂତ ।

ଦରକାର ନାହିଁ ଧନମାନ
ଯିବାକୁ ପଡ଼ିବନି
ମକ୍‌କା, ଭଟିକାନ୍, ବୃନ୍ଦାବନ
ଛୋଡ଼ା ନିଜ ସୁସ୍ଥ ମନ।

ଗଜାନନ ପରି ବାସ୍ତବବାଦୀ
ପ୍ରଦକ୍ଷିଣ କଲେ ତାତମାତ
ପୃଥିବୀ ହୋଇଯିବ
ବାମନର ଏକପାଦ
ରାମ, ରହିମ୍, ଖ୍ରୀଷ୍ଟଙ୍କ ପାଇଁ
ମୂଢ଼ମତି କରିବେନି ବାଦ।

■■

# ସନ୍ତ୍ରାସବାଦ

ଅସ୍ତ ହେଲେ ରବି
ଅନ୍ଧାର ଆସଇ ମାଡ଼ି
ଜଳାଇ ଡିବି, ବିଜୁଳିବତୀ
ବାହାବା ନିଅଇ ମନୁଷ୍ୟ ବୁଦ୍ଧି।

ପ୍ରଗତି ନାମେ ନାନାବାଦ
ସମାଜେ ନେଇଛି ଜନ୍ମ
ଗୋଟାଏ ଆରକୁ ବଳିଯିବାକୁ
ହୋଇଛନ୍ତି ପରସ୍ପର ପ୍ରତିଦ୍ୱନ୍ଦ୍ୱୀ।

ସର୍ବହରାର ତ୍ରାଣକର୍ତ୍ତା ହୋଇ
ସନ୍ତ୍ରାସବାଦ ଆଗେ ଯାଏ ମାଡ଼ି
ଗ୍ରହନକ୍ଷତ୍ର, ସୂର୍ଯ୍ୟ ଚନ୍ଦ୍ରକୁ
ସତେଯେମିତି ଆଣିବ ଭିଡ଼ି।

ଆଜ୍ଞା ଦେଲା ମାତ୍ରେ
ହେବ ଦିନ ରାତି
ନ ରହିବେ କେହି ତା'ର ଅରାତି
ଜଗତେ କେବଳ ସେଇ ହବ
ଏକା ଛତ୍ରପତି।

ଆଖିରେ ତା'ର
ଜଳୁଥାଏ ବହ୍ନି
ଘରିଆଡ଼ ତାକୁ
ଦିଶଇ ନାଲି
ମଣିଷ ରକତେ ସେ
ଖେଳିବାକୁ ଭଲପାଏ ହୋରି।

ପୂର୍ବାହ୍ଣ ସମୟେ
ଖରା ସିନା ତେଜୀୟାନ୍
ଅପରାହ୍ଣ ହେଲେ ସୂର୍ଯ୍ୟକିରଣ
ଧୀରେ ଯାଏ ମଉଳି।

କୋଉ ଛଟକରେ
ସନ୍ଧ୍ୟା ନଇଁଆସେ
ପୃଥିବୀକୁ ଅନ୍ଧାରରେ
ଦିଏ ବୁଡ଼େଇ।

ଜୀବନ ପ୍ରଦୀପ ଦିନେ
ଲିଭିଯିବ ହୋଇ ମଳିନ
ବିଧିର ଏହା ବିଧାନ।

ବାଦରୁ ଜନମ ନିଅଇ ବିବାଦ
ସନ୍ତ୍ରାସବାଦୀକୁ ବୁମେରାଂ ହୁଏ
ନିଜ ହିଂସାଲୁ ମତବାଦ।

କର୍କଟ ରୋଗ ପରି
ହିଂସା, ଦ୍ୱେଷ ଯାଏ ମାଡ଼ି
ଡାକିଆଣେ ଯମଦୂତ।

ଧୈର୍ଯ୍ୟର ସହ
କରିଲେ ବିରୋଧ

ନିରପେକ୍ଷ ଚିନ୍ତାଧାରା
ଦୂର କରେ
ଅନ୍ୟାୟ, ଇର୍ଷା ଭାବ ।

ଅନ୍ଧାର, ଫରଚ୍ଛ
ଆଲୁଅର ଖେଳ
ସୁଖ, ଦୁଃଖ
ନିଜ ଅନ୍ତର ଗୋଳ ।

ଆତ୍ମସଂଯମତା ଦିଏ
ସତ୍ୟ, ଶାନ୍ତିର ଦିଶା
ମାନବବାଦର ବାରତା
ସବୁ ବାଦ ମଧ୍ୟେ ଯିଏ
ଲଭିଥାଏ ଶ୍ରେଷ୍ଠତା ।



# ହାଟ

ମଣିଷ ଥିବା ଯାକେ
ହାଟ ଚାଲିବ
ଦୈନିକ ହେଉ କି
ସାପ୍ତାହିକ, ମାସିକ
ହାଟ ବସୁଥିବ
ପୃଥିବୀ ସାରା
ଜୀବନର ହାଟ
ନିରନ୍ତର ହେଉଥିବ।

ରାସ୍ତା ବା ଜଙ୍ଗଲ
ସକାଳ କି ଦିପହର
ହାଟ ବସିବାର
ନଥାଏ ସ୍ଥାନ, କାଳ
ହେଲେ ହାଟ ଉଠିବାର
ସମୟ ନିର୍ଦ୍ଧାରିତ।

ହାଟ ଆରମ୍ଭରେ
ହୁଏନି ବେଶୀ ଭିଡ଼ଭାଡ଼
ବଇନି ସମୟରେ
ଦୋକାନୀ ଲଗାଏ
ଉଚିତ ମୂଲ୍ୟ ।

ଜମିଲେ ହାଟ
ଚାଲେ ମୂଲଚାଲ
ବେପାରୀ ଭାବେ
ଉଠାଇବ ବହୁତ ଲାଭ
ଖାଉଟି ଚାହେଁ
ପାଇବ ଶସ୍ତା ଦର ।

ହାଟ ଗଳିକନ୍ଦି
ଦୋକାନରୁ ଦୋକାନ
ବୁଲି ଗରାଖ ମୂଲାଏ
ଜିନିଷ ଭାଉ ।

କୋଉଠୁ କିଣିଲେ
ଫାଇଦା ମିଳିବ
ଦୋଦୋ ପାଞ୍ଚ
ଆଗପଛ ହୁଏ ।

କୋଉ ଦୋକାନରେ
ଗୋଟାଏ ଜିନିଷର
ଦାମ୍ କମ୍ ତ
ଅନ୍ୟଟି ବହୁତ ।

ସବୁ ଦୋକାନୀ
ପକ୍କା ହିସାବୀ

କେହି କାହାକୁ
କମ୍ ନୁହଁନ୍ତି।

କହିବୋଲି ଜାଣିଲେ
ପଚ଼ା ଚିଙ୍ଗୁଡ଼ି
ବିକିବା ସହଜ।

କଣ୍ଟା ମାରି
ପାଲା ଗଡ଼େଇ ଦେଲେ
ଦୋକାନଦାର ହୁଏ ସିନା ଲାଭବାନ
ଗରାଖ ସେ ଦୋକାନକୁ
ଆଉ କେବେ ଆସିବାକୁ
ବଳାଏନି ମନ।

ମାଗଣା ପାଇ
ବେଳେବେଳେ
ଗରାଖ ଖୁସି
କହିଲେ ନ ସରେ
ମଣେ ସେ ନିଜକୁ
ଚଲାକ, ଭାଗ୍ୟବାନ।

ପଡ଼ିଲା ଯଦି
ପଚ଼ା ଆଳୁ, ସଢ଼ା କଖାରୁ
ଯୋଗ୍ୟ ହୁଏନି
ଗୋରୁ କୁଣ୍ଡକୁ
କାନମୁଣ୍ଡ ଆଉଁଶି
ରହିବାକୁ ପଡ଼େ ଗରାଖକୁ।

ଚିହ୍ନି ନ ଜାଣିଲେ ଗୁଣ
କଷି ନ ପାରିଲେ ଦର
ଘାଟା ଖାଇବା ସାର।

ଭିଡ଼କୁ ଡରି
ସଅଳ କି ଉଛୁର
ହାଟକୁ ଗଲେ
ସବୁ ସଉଦା ମିଳିବା
ନୁହଁଇ ସମ୍ଭବ ।

ହାଟ ଭାଙ୍ଗିଲା ବେଳକୁ
ଧରୋଟିଆ ବେପାରୀ
ଗଦେଇ ରଖି
ତା' ପଣ୍ୟ ଦରବ
ନଷ୍ଟ ହୋଇଯିବ ବୋଲି
କରୁଥାଏ ମନସ୍ତାପ ।

ଶେଷ ଆଡ଼କୁ
ଆସିଥିବା ଖାଉଟି
କୃପଣ ଗରାଖ
ଦର ଅଦରରେ
କଣାଫୁଟା, ପୋକାଶୁଖା
ବାଛିରିଆ ଜିନିଷତକ କିଣି
ପାଇଥାଏ ସନ୍ତୋଷ ।

ହାଟ ସରିଯିବ
ଜାଣି ବି ମଣିଷ
ଜୀବନ ତମାମ
ନିଜ ଲାଭକ୍ଷତିର
କରେ ହିସାବନିକାଶ
ପରପାଇଁ ଭାବିବାକୁ
ତାକୁ ମିଳେନି ବେଳ ।

ଜିନିଷକୁ ନେଇ
ଦର ହେଲେ ଉଚିତ
ନିକିତିର ଧର୍ମ କଣ୍ଟା
ରହିଲେ ସଳଖ
ଗରାଖକୁ ମଣିଲେ ଈଶ୍ୱର
ହାଟ ସଉଦା
କିଣା ବିକାରେ
କାହାରି ହେବନି ଲୋକସାନ।

■■

# ବର୍ତ୍ତମାନ

ବର୍ତ୍ତମାନ
ଏକ କାଳ ବିଶେଷ
ମନୁଷ୍ୟ ନିମିତ୍ତ କିନ୍ତୁ ସର୍ବସ୍ୱ ।

ବର୍ତ୍ତମାନକୁ ନେଇ
ମଣିଷ ବଞ୍ଚେ
ଗଢ଼େ ଜୀବନର କୋଣାର୍କ
ଭିତ୍ତିଭୂମି ଯା'ର ଅତଳ ସାଗର ।

ଶିବେଇ ସାନ୍ତରା ପ୍ରୟାସ
ହୋଇଥିଲା ପ୍ରଥମେ ବିଫଳ
ଭାଙ୍ଗି ନ ଥିଲା ତା' ମନୋବଳ
ଅତୀତକୁ ସୁଧାରିବା ପାଇଁ
ଉଦ୍ୟମରୁ ଯାଇ ନ ଥିଲା ଦୂରେଇ
ଭବିଷ୍ୟତ ଉଦ୍ଦେଶ୍ୟ କରିଥିଲା ପୂରଣ ।

ତତଲା ଯାଉକୁ ମଝିରୁ ଖାଇ
ଇତର ବୁଢ଼ୀଠାରୁ
ପାଇଥିଲା ନିର୍ମାଣ କଉଶଳ ।

ଅତୀତକୁ ଜାବୁଡ଼ି ଧରିଲେ
ଜୀବନ ଘୁଞ୍ଚିବନି ପାଦେ

ତର୍ଜମା କରିଲେ ବିଗତ ଦିନ
ସଫଳ ହୋଇବ ଆଜିର ଦିନ।

ଭବିଷ୍ୟତ ହେଲେ ଉପେକ୍ଷିତ
ଲକ୍ଷ୍ୟସ୍ଥଳେ ପହଞ୍ଚିବା କଷ୍ଟ
ବର୍ତ୍ତମାନକୁ ନେଇ ଭବିଷ୍ୟତ
ହୋଇଲେ କଳ୍ପିତ
ଜୀବନ ହେବ ସୁଖଦ।

ଭବିଷ୍ୟତକୁ ଅଯଥା କରିଲେ ଆଶରା
ମଣିଷ ନିରାଶ ହେବ ବିଚରା
ରାବଣର ସରଗକୁ ନିଶୁଣି
ରହିଗଲା ଅଧୁରା
ମଣିଷ ଜୀବନ ସର୍ବଦା
ପାଣି ଫୋଟକା।

ଆଜି କାମ ଆଜି କଲେ
କାଲିକି ରହିବନି ଅଡୁଆ
ଭବିଷ୍ୟତ ନ ଦେଇ ଧୋକା
ବଖାଣିବ ଗୌରବ ଗାଥା।

ଅତୀତ ହୋଇପାରେ
ଗପର ସତ
ବର୍ତ୍ତମାନ ହୁଏ ଯଦି
ସତର ଗପ
ଭବିଷ୍ୟତ ସ୍ୱପ୍ନ
ବାସ୍ତବ ରୂପ ନେବ
ଶତ ପ୍ରତିଶତ।

■■

# ଆଲୁଅର ବାଜି

ଗାଁ ମୁଣ୍ଡ ଗୋହିରିରେ
ଗୋରୁଗୋଠ ଘରମୁହାଁ ହୋଇଥିଲେ
କୁକୁରପଲ ଆଖପାଖ ପଡ଼ିଆକୁ
ଧାଉଡ଼ି ବାନ୍ଧିଥିଲେ ।

ଦିଗ୍‌ବଳୟ ପଛପଟେ
ସୂରୁଯ ଲୁଚି ଯାଇଥିଲା
ସନ୍ଧ୍ୟାତାରା ଖାଲି ଯାହା
ଆଖିମିଟିକା ମାରୁଥିଲା ।

କିଆବୁଦା ଗୋହିରିରୁ
ବିଲୁଆର ଡାକ ଶୁଭୁଥିଲା
ମନ୍ଦିରରୁ ଘଣ୍ଟଘଣ୍ଟିର ଧ୍ୱନି
କାନ ପରଦାରେ ଆସି
ପିଟି ହେଉଥିଲା ।

ଚଉରାମୂଳେ ସଞ୍ଜସଳିତା
ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା
ବାଇଜୀ ଟୁଙ୍ଗିରେ ସଙ୍ଗୀତ
କୁହୁକୁହୁ ତାନେ ତାଳ ଧରୁଥିଲା ।

ଦିନ, ରାତିର ବାଗୁଡ଼ି ଖେଳ
ପୂରା ଜମି ଆସୁଥିଲା
ବଞ୍ଚି ବଞ୍ଚେଇବାକୁ ଆଲୁଅ
ପ୍ରାଣମୂର୍ଚ୍ଛା ରାହା ଧରିଥିଲା।

ଅନ୍ଧାର କିନ୍ତୁ
ଗୋଟା ପରେ ଗୋଟା
ଶୂନ୍ୟେ ଧରି ନେଇ
ଭିଡ଼ାଭିଡ଼ି କରି
ନିଜ ପଟକୁ ନେଉଥିଲା ଟାଣି।

ପୃଥିବୀର ଖେଳପଡ଼ିଆରୁ
ଦିନ ସିନା ଯାଏ ହଟି
ଆକାଶ ବୁକୁରେ ଆଲୁଅ
କରୁଥାଏ ଆଖି ମିଟିମିଟି।

ଦୂରଦେଶୀ ତାରା
ଅମେଇସାବାସୀ ଜହ୍ନର
କାଣିଛାଏ ନହକିଆ କିରଣ
ମହଣେ ବହଳ କିଟିକିଟିଆ ଅନ୍ଧାରକୁ
ଦେଖଉଥାଏ ହାର୍‌କିନ।

ବିପଦ କେବେ ଆସେନି ଏକା
ସାଙ୍ଗେ ଡାକିଆଣେ ସହୋଦର ସଖା
ଝଡ଼ ବରଷାର ରାତି
ଏସବୁରେ ନୁହେଁ ମୋଟେ ବେହିସାବୀ।

କଳା ବାଦଲଟା ଆକାଶକୁ ଢାଙ୍କି
ଆଲୁଅକୁ କରୁଥାଏ ଅଣନିଶ୍ୱାସୀ
ପାହି ସମ୍ଭାଳିଥାଏ ଏକାକୀ ବିଜୁଳି

ଅନ୍ଧାରକୁ ଟକ୍କର ମାରି
ଦଉଥାଏ କାଳି ।

ଚମ୍ପିଆନ ହେବାରେ
ବାହାବା ନ ଥାଇ
ରକତ ଯଦି
ପାଣି ନ ଫାଟଇ
ବ୍ୟସ୍ତ ନ ହୋଇ
ଅପେକ୍ଷା କରିଲେ
ଉପେକ୍ଷାରେ କାଳ ପୂରଇ ।

ଆଲୋକ ପାଇ ଜଗତ ଗୋଟାକ
ବିଜୟ ଉଲ୍ଲାସେ ଉଠଇ ଜାଗି
ଅରୁଣ ପରିକା ଟ୍ରଫିଟାକୁ ଧରି
ସିନ୍ଦୁରା ଫାଟେ ହସି ହସି ।

ଜିତିବା ହାରିବା
ସଉଦାଗରୀ କଥା
ଖେଳଖେଳିବା ବୀରତ୍ୱର ଗାଥା
ଖେଳ ପ୍ରତି ଦେଇ ମନଧ୍ୟାନ
ବାଜି ମାରିନେବାରେ
ଆଲୁଅ ଧୁରୀଣ ।



# ଖବର କାଗଜ

ସକାଳୁ ଉଠିଲେ
ଶେଯରେ ଖୋଜେ
ନ ଦେଖିଲେ ବିରକ୍ତି ଲାଗେ
କାଲେଣ୍ଡରରେ ଆଖି ବୁଲାଏ
ନ ଥିଲେ ଛୁଟି
ବିଚଳିତ ହୁଏ ମତି ।

ଚାଲିଯାଏ ଦୁଆର ମୁହଁକୁ
ଚାହିଁରହେ ବାହାରକୁ
ହକରବାଲା ଟୋକଟା ଉପରେ
ରାଗଯାଏ ଚଢ଼ି ।

ବାରବାର କହିଛି ତାକୁ
ପ୍ରେୟସୀକୁ ମୋର ଆଣିବୁ
ବଡ଼ି ସକାଳୁ

ସ୍ପୀର ନ ଥିବ ତାଗିଦ
ନ ଥିବ କିଛି ଝିନ୍‌ଝଟ୍।

ପାଇଗଲେ ତାକୁ
ହୁଏ ମୋର ଦିଲ୍ ଖୁସ୍
ଖୁସି ମିଜାସରେ
ତା' ଉପରେ ବୁଲାଏ ଆଖି
ଯୋଉଠି ମନ ଯାଏ ପାଇ
ସେଇଠି ଦେଖେ ଆଖି ପୂରେଇ।

ମୋ ପ୍ରେମିକା ମଧ୍ୟରେ
ସିଏ ସବା ଆଗରେ
ନାଁ ତା'ର ଖବରକାଗଜ।

ତାଜା, ମଜା ଖବର
ପ୍ରେମିକାର ରୂପ ପରି
ଦିଏ ନୂଆ ପରଶ।

ପ୍ରେମିକା ବଚନୁ
ଝରଇ ମଧୁ
ତା' ମାନ ଅଭିମାନର
କଥା ମଧୁର
ଦିଅଇ ପ୍ରେମର ଦିବ୍ୟ ସନ୍ଦେଶ।

ଦୃଷ୍ଟିଭଙ୍ଗୀରେ ନିରପେକ୍ଷତା
ଆଲୋଚନା ସମାଲୋଚନାରେ ଶାଳୀନତା
ଭଦ୍ର, ମଧୁର ଭାଷା
ସମ୍ବାଦ ପରିବେଷଣର ପରିଭାଷା
ପାଠୁଆ, ଅପାଠୁଆ ସଭିଙ୍କର
ହୋଇଥାଏ ଆଶା ଭରଷା।

ସମ୍ବାଦପତର ହୁଏ ଯଦି
ବାରବନିତା
ସମାଜର ମାନଦଣ୍ଡ
ଭୁଶୁଡ଼ିବା ପକ୍କା ।

ସତ ମିଛ ନ ବୁଝି
ଆଗର ବିଚାରକୁ
ପଛରେ ପକାଇ
ଗରମାଗରମ, ଟଟକାଟଟକି
ଖବର ପରଷିଲେ
ମନକୁ ପାଏ ତ୍ୱରିତ
କ୍ଷଣିକ ତା'ର ସ୍ଥାୟିତ୍ୱ ।

ସୃଷ୍ଟି ହୁଏ ଭୁଲ୍ ବୁଝାମଣା
ମାରାତ୍ମକ ରୋଗ ଭଳି ବ୍ୟାପିଯାଏ
ଈର୍ଷା, ଦ୍ୱେଷ, ଅରାଜକତା
ସମାଜ ହୁଅଇ ଧ୍ୱଂସ
କୋକୁଆ ଭୟରେ ଯେମିତି
ନାଶ ହୋଇଥିଲା ଯଦୁବଂଶ ।

ପତିବ୍ରତା ପତ୍ନୀ ସାଜିଲେ
ସମ୍ବାଦପତ୍ର
ସମାଜର ବଢ଼ିବ ମାନମହତ
ହୋଇବ ସେ ଜଗତ ଖ୍ୟାତ ।

ସାବିତ୍ରୀ, ସତ୍ୟଭାମା
ନିଜ ଜୀବନକୁ ଲଗେଇ ବାଜି
ହୋଇଛନ୍ତି ପତିପ୍ରାଣା ନାରୀ
ପୂଜା ପାଉଛନ୍ତି ଧରା ମଣ୍ଡଳେ
ଯୁଗ ଯୁଗ ଧରି ।

ସତ୍ୟାସତ୍ୟ କରି ପରୀକ୍ଷଣ
ମୂଲ୍ୟବୋଧକୁ ଦେଇ ସମ୍ମାନ
ସମ୍ବାଦପତ୍ର କଲେ ପ୍ରକାଶନ
ବିପଦ ଆସିପାରେ ଘନଘନ ।

କର୍ତ୍ତବ୍ୟ ପ୍ରତି
ଦେଲେ ଧ୍ୟାନ
ସମାଜର ହିତ ପାଇଁ
ହେଲେ ଯତ୍ନବାନ
ଖବରକାଗଜର ବଢ଼ିବ ମାନ ।



# କଟକୀ ମଶା

ମଶାଙ୍କ ରାଜା ଭିତରେ ରାଜା
କଟକୀ ମଶା
ନାଁ ତାକ ମହାରାଜା ।

ବାରବାଟୀ ଦୁର୍ଗ
ଉତ୍କଳ ଗଜପତିଙ୍କ
ଶାସନର କୀର୍ତ୍ତିରାଜ ।

କଟକ ବଡ଼ ନର୍ଦ୍ଦମା
ମଶାଙ୍କ ଗଡ଼ର
ସର୍ବଶ୍ରେଷ୍ଠ ନମୁନା ।

ଅଛି ପୁଣି ଏଠି
ଆଳି, କନିକା, ହିନ୍ଦୋଳ
ଆହୁରି ଅନେକ
ରାଜା, ଜମିଦାର କୋଠି ।

ମଇଳା ପାଣିର ନଳା, ନାଳୀ
କରଦ ରାଜା ପରି
ସହର ସାରା
ବିଛେଇ ହୋଇଛି
ଆନୁଗତ୍ୟ ଦେଖାଇ ।

ହଜାର ବର୍ଷରୁ ଅଧିକ
ପୁରୁଣା ଏ ସହର
କୀର୍ତ୍ତିମୟୀ ଓଡ଼ିଶାର
ପ୍ରାଚୀନ ରାଜଧାନୀ ।

ମଶାଙ୍କ ରାଜୁତି କଟକେ
ନୁହେଁ ଆଜିକାର
କୋଉ ଆଦିମ ଅମଳର ।

ମଶାମାନେ ଏ ସହରେ
ଦିନରେ ବି ରାଜ୍ କରନ୍ତି
ରାଜରାସ୍ତାରେ ପକ୍ଷୀରାଜ
ଘୋଡ଼ା ଭଳି ଉଡ଼ି ବୁଲନ୍ତି ।

ଏକ ଛତ୍ରଧାରୀ ହୋଇ
କଟକକୁ ହୁଲସ୍ଥୁଲ୍ କରନ୍ତି
ନ ଥାଏ କାହାକୁ ତାଙ୍କର
ତିଳେ ମାତ୍ର ଡର ଭୟ ।

ଶ୍ରମିକ ହେଉ କି ଅଫିସର
କଟକୀ ମଶାମାନେ
କରନ୍ତିନି ପାତର ଅନ୍ତର
ବିଚରନ୍ତି ସଭିଙ୍କୁ ମଣିଷ
ରକ୍ତ ଶୋଷି ମେଣ୍ଟାନ୍ତି ଶୋଷ ।

ମଶାରି, ମଶାଧୂଆଁ
ବ୍ୟବହାର କରେ ଧନିକ
ଦେହରେ ହାତ ବାଡ଼େଇ
ତୁଚ୍ଛା ଧୂଆଁ ଦେଇ
ଗରିବ କରେ ମଶାର ପ୍ରତିକାର ।

ମଶା ପ୍ରତି ବିରାଗ
ହେଲେ ଟିକେ ଭଣା
ମଶକ ଜାଳାରେ
ଲାଗେ ବଡ଼ ବିବ୍ରତ ।

ରାଜାଙ୍କ ପାରିଧି ଚାଲେ
ଘଞ୍ଚ ଜଙ୍ଗଲରେ
ଶୁନଶାନ ଅନ୍ଧାର ରାତିରେ ।

ମଶାଙ୍କ ଦୌରାତ୍ମ୍ୟ ବଢ଼ିଚାଲେ
ସନ୍ଧ୍ୟା ପାଖେଇ ଆସିଲେ
କୋଳାହଳ ଘନ ଜନବସତିରେ ।

କଟକୀ ମଶା
ଭାରି ସାହସିଆ
ବିଜୁଳିବତୀର ହାଲୋରେ
କାମୁଡ଼ି ଦେଖାଏ
ତା' ବାହାଦୁରି ପଣିଆ ।

ତାରକସି କାମ ପାଇଁ
କଟକ ବିଖ୍ୟାତ
ମଶାଙ୍କ ଦାଦାଗିରି ନେଇ
ହଜାର ବର୍ଷର ସହର
ଚାରିଆଡ଼େ ପରିଚିତ ।

ଅଳିଆମଳିଆ ଖାଲଖମା
ବର୍ଷ ବର୍ଷ ଧରି
ସହରରେ ବାନ୍ଧିଛି ବସା
ପୌରପାଳିକା ବାଲା
ମଶାଙ୍କ ସେବକ ସଚ୍ଚା ।

ମଶାଙ୍କ ସତ୍କାରରେ ସେମାନେ
କେବେ କେମିତି କଲେ ହେଳା
ଲୋକେ ମାରନ୍ତି ଓଲଟା କୀଳା ।

ଖାଇବା ଜାଗାରେ
ଅଇଁଠା ପତର ଫିଙ୍ଗିଲେ
ଅବସ୍ଥା ହୁଏ ଯାହା ।

ଅଳିଆଗଦା, ନର୍ଦ୍ଦମା ପାଣି
ନିର୍ବିକାରରେ ବଢ଼ିଚାଲିଛି ସହରେ
ଭାଇଚାରାର ସମ୍ପର୍କ ମଣି ।

କଟିକିଆ ନହେଲେ ସଚେତନ
ଯୋଜନା, ଆଇନ୍‌କାନୁନ୍
ସବୁ ହେବ ଧୂଆଁବାଣ ।

ପରସ୍ପରକୁ କାଦୁଅ ଫିଙ୍ଗିଲେ
ମେଲେରିଆ, ଡେଙ୍ଗୁ
ମଶାଜାତ ରୋଗ
କେବେ ହେବନି ଦୂର ।

ଭାଇଚାରାର ଭାବ
ନ ହୋଇଲେ ମହତ
ସହଚର ହେବ ଦୁର୍ଯୋଗ ।

ମୋଗଲ, ମରହଟ୍ଟା, ଇଂରେଜଙ୍କ ପରି
ଯୁଗ ଯୁଗ ଧରି ମଣା
କଟକେ ଚଳାଇଛନ୍ତି
ମନମୁଖି ଶାସନ।

ନ ଆପଣେଇଲେ
ପରିଷ୍କାର ପରିଛନ୍ନ
ନିଜ କବର ନିଜେ
ଖୋଳିବା ସମାନ।

■■

# ଗାଁ ମଶାଣି

ଗାଁ ଶେଷମୁଣ୍ଡ
ଗଦାଗଦା ଖପରାଖଣ୍ଡ
ଦଦରା, କଣା ହାଣ୍ଡି, ମାଠିଆ
ଅଣେଇ ତଳେଇ ପଡ଼ିଥାଏ
ହୋଇ ବେହାଲିଆ ।

ଚିରାଫଟା ହେଁସ, ଲୁଗାପଟା
ଉଇଚରି ମାଟିରେ ମିଶିବାକୁ
ରହିଥାଏ କିଛି କିଛି ବାକି ।

ଦରପୋଡ଼ା କାଠ ବାଉଁଶ
ଗୋରୁଗାଈ ହାଡ଼, ଖପୁରି
ଏଣେତେଣେ ପଡ଼ିଥାଏ
ବିଛାଡ଼ିଲା ପରି ।

ଛକି ଚିହ୍ନ ଭଳି
ଠାଏ ଠାଏ ଖାଲୁଆ ଦିଶୁଥାଏ
ବେଶୀଦିନର ହୋଇନଥିବା

କୁଇର ଚିହ୍ନ
ଧ୍ୱସ୍ତବିଧ୍ୱସ୍ତ ଜୀବନର ନିଶାଣ
ଧରି ରଖିଥାଏ ଶ୍ମଶାନ ।

କିଆବୁଦା ଟାଣି ଦେଇଥାଏ
ମଶାଣିର ସୀମାରେଖା
ଆମ୍ବ, ଗଙ୍କୁଣ୍ଡା, ବର, ଓସ୍ତ
ଗଛପଟେ ରହିଥାଏ ଘେରି ।

ପାଖ ତାଳଗଛ
ବରଡ଼ାରେ ବସି
ଶାଗୁଣା ଝାଡୁଥାଏ ପର ।

କାଉ, ଚିଲ କେତେଟା
ଉଡ଼ି ବୁଲି ବୁଲି
ମଡ଼ା, ମଢ଼ ଅପେକ୍ଷାରେ
ହେଉଥାନ୍ତି ବ୍ୟସ୍ତ ।

କୁକୁର ଯୋଡ଼ାଏ
ଶୃଙ୍ଖଳା ହାଡ଼କୁ
ଚକଟୁଥାନ୍ତି କଷି ।

ଦିନ ଯେମିତି ଏଠି ନିରବ
ରାତି ତା'ଠାରୁ ଆହୁରି
ବେଶୀ ନିଶୂନ ।

ମଝିରେ ମଝିରେ ବିଲୁଆର
ଡାକ ଜଣେଇଦିଏ
ସମୟର ପହର ।

ମନୁଷ୍ୟର ଅନ୍ତିମ ବିଶ୍ରାମସ୍ଥଳ
ଶୁଏ ସେ ଚିରନିଦ୍ରାରେ

ନଥାଏ କିଛି ଝିନ୍‌ଝଟ
ଅବା ଗହଳଚହଳ।

ଆଖି ବୁଜିଲେ
ମଣିଷ ମଣିଷକୁ କହେ ଶବ
ନିଜ ହାତ ଗଢ଼ା
ରାଜପ୍ରାସାଦ, କ୍ଷେତବାଡ଼ିରେ
ମିଳେନି ତାକୁ ସ୍ଥାନ
ପରିତ୍ୟକ୍ତ ଶ୍ମଶାନ
ଶେଷରେ ହୁଏ ତା' ବାସସ୍ଥାନ।

ମଶାଣି ନୁହେଁ ମନ୍ଦିର
କରେନି କାହାକୁ ବାରଣ
ପାପୀ, ତପୀ ସମସ୍ତଙ୍କୁ
କୋଳେଇ ନେବାରେ
ହୋଇଥାଏ ଆଗଭର।

ଅନ୍ତୁଡ଼ିଶାଳରେ
ଶିଶୁ ପୁଇଁଥାଏ ନିଆଁ
ମଶାଣିର ନିଆଁ
ଦେଖେନି ବୟସ
କରେନି ପର ଆପଣାର
ବାଛବିଚାର।

ଭୋଗୀ ଖୋଜେ
ସୁରମ୍ୟ ଅଟ୍ଟାଳିକା
ଭାବେ ନାହିଁ
ଦିନେ ନା ଦିନେ
ଛାଡ଼ିବ ତା ଖୋଳପା।

ଯତନେ ରଖେ ସାଇତି
ଦରକାରୀ ଦରବକୁ
ଫିଙ୍ଗି, ପୋଡ଼ି ନଷ୍ଟ କରେ
ଅଦରକାରୀ ସବୁକୁ।

ଯୋଗୀ କିନ୍ତୁ ନିର୍ବିକାର
ଚିରନ୍ତନ ଧାମ ଶ୍ମଶାନ
ଅଟଇ ତା' ପ୍ରିୟସ୍ଥାନ
ଭଲମନ୍ଦ ଭେଦଭାବ
ମାଡ଼େନା ତା' ପାଖ
ଅନ୍ଧାର ବୁକୁ ଚିରି ଆଲୁଅର
ଦିଏ ସେ ଖବର।

ପ୍ରେତଭୂମି ନୁହେଁ
ଗାଁ ମଶାଣ
ପୂର୍ବପୁରୁଷ ବାସସ୍ଥାନ
ହୃଦୟେ ଯିଏ ପାଇଥାନ୍ତି
ସାକ୍ଷାତ୍ ଈଶ୍ୱରଙ୍କ ଆସନ।

ବାସ୍ତବ ଦୁନିଆର
ଦିବ୍ୟଧାମ ଶ୍ମଶାନ
ପାର୍ଥିବ ଶରୀର
ଏଠି ପଞ୍ଚଭୂତେ ହୁଏ ଲୀନ
ମହାଶୂନ୍ୟକୁ ଯିବାରେ ମଶାଣି
ଏକମାତ୍ର ନିର୍ଭରଯୋଗ୍ୟ ନିଶୁଣି।

■■

# ଘଣ୍ଟା

ଘଣ୍ଟାର ଆକାର
ନାନା ପରକାର
କଣ୍ଟା ବୁଲୁଥାଏ
ହୋଇ ଗୋଲାକାର
ପୃଥିବୀ ଯେମିତି ଘୂରୁଥାଏ
ଅକ୍ଷ ଚାରିପଟେ
ଅଣ୍ଡାକାର କକ୍ଷେ ।

ସାତମହାଦେଶ, ପାଞ୍ଚମହାସାଗର
ଜଳ, ସ୍ଥଳଭାଗ ମିଶି ବାର
ଅଟଇ ଧରା ପରିସର ।

ଘଣ୍ଟାରେ ସୂଚିତ ସମୟ
ବାରଭାଗେ ବିଭକ୍ତ

ସ୍ଥାନ ଭେଦ ଅନୁସାରେ
ଫରକ ଥାଏ ସମୟରେ।

ଆଗପଛ ହୋଇ
ଘଣ୍ଟା ଚାଲିଲେ ବି
ଦିନରାତି ମିଶି ସବୁଠି
ଚବିଶ ଘଣ୍ଟାର
ଅଟଇ ସମାହାର।

ସେକେଣ୍ଡ କଣ୍ଟାକୁ ନଥାଏ ବିଶ୍ରାମ
ହରଘଡ଼ି କରୁଥାଏ ଘୂର୍ଣନ
କୁଲି ମୂଲିଆର ଦିନରାତି ଖଟଣି
ଯୋଗାଡ଼ କରିବା ଲାଗି ଦାନାପାଣି
କୃଷକ, ଶ୍ରମିକ ଶ୍ରମଦାନ
ପୃଥିବୀକୁ କରିଛି ପ୍ରାଚୁର୍ଯ୍ୟପୂର୍ଣ୍ଣ।

ମିନିଟ୍ କଣ୍ଟା ଭାରି ଚଲାକି
ପକାଏ ପାଦ ଗଣି ଗଣି
ମଝିକାଟିଆ କର୍ମଚାରୀ
ତଳିଆ ଲୋକ ପରି
ନୁହଁଇ ଏତେ ପରିଶ୍ରମୀ
ଉପରବାଲା ଭଳି
ନେବାକୁ ଦାୟିତ୍ୱ
ଦିଅନ୍ତିନି କେବେ ଗୁରୁତ୍ୱ
ମଝିରେ ରହି
ଫାଇଦା ନିଅନ୍ତି ମାରି।

ଘଣ୍ଟାକଣ୍ଟା ଚାଲି
ନୁହେଁ ତରତର

ରାଜକୀୟ ଠାଣିରେ
ଘଲେ ମଠ ମଠ।

ମହାରାଜା ବିଜେ ହେଲେ
ବାଜେ ତୂରୀ, ଭେରୀ
ଘଣ୍ଟାକଣ୍ଟା ପହଞ୍ଚିଲେ
ଯଥା ସ୍ଥାନେ
ଆଲାରାମ୍ ବାଜେ
ବିବିଧ ମଧୁର ସ୍ୱରେ।

ସେକେଣ୍ଡ କଣ୍ଟା ଘଲୁଥାଏ
ଖାଲି ଟିକ୍ ଟିକ୍ କରି
କଠୋର ପରିଶ୍ରମ ଯନ୍ତ୍ରଣାର
ଛଟପଟ ଚିତ୍କାର ଶୁଣାଇ।

ଦେଖନ୍ତି ସମସ୍ତେ
ଘଣ୍ଟାକଣ୍ଟା, ମିନଟ୍‌କଣ୍ଟାକୁ
ଆଡ଼ ଆଖିରେ ଚାହେଁନି
କେହି ସେକେଣ୍ଡ କଣ୍ଟାକୁ
ପଡ଼ିଲେ ଘଡ଼ିସନ୍ଧି ମୁହୂର୍ତ୍ତ
ଖୋଜା ପଡ଼ିଥାଏ
ସେକେଣ୍ଡ କଣ୍ଟାର ମହତ୍ତ୍ୱ।

ପୃଥିବୀଟା ସାରା ଚାଷୀ, ମୂଲିଆ
ଉପକାର କରି ଅନ୍ୟର
ଜୀବନ ତମାମ
ନିଜେ ହେଉଥାନ୍ତି ହନ୍ତସନ୍ତ।

ଶ୍ରମିକ, କୃଷକ ନାମେ
କରି ଯୋଜନା, ଦିବସ
ସରକାର ବସେ ନିଧଡ଼କ।

ମଲିମୁଣ୍ଡିଆକୁ ଛାଡ଼ି
ସମାଜ କେବେ
ଯିବନି ପାଦେ ମାଡ଼ି
ସେକେଣ୍ଡ ବିନା ଘଣ୍ଟା
ଦଣ୍ଡେ ଚଳିବା
ଅକାରଣ ଚେଷ୍ଟା ।

■■

# ସମବାହୁ ତ୍ରିଭୁଜ

ସମବାହୁ ତ୍ରିଭୁଜ ଅଙ୍କନ
କେଉଁଠି କେବେ ନୁହେଁ ଭିନ୍ନ।

ରାଧା ପାଟପଟନି, ଯଶୋଦା ପଣତ
କୃଷ୍ଣଙ୍କୁ ପ୍ରେମ ତ୍ରିଭୁଜରେ କରିଥିଲେ ବନ୍ଧନ।

ସମବାହୁ ତ୍ରିଭୁଜର ବାହୁ ହୋଇଲେ ପ୍ରେମିକ ପ୍ରେମିକା
କୋଣ ସବୁ ଯାର ଶାଶ୍ୱତ ପ୍ରେମର କଣିକା।

ଲକ୍ଷ୍ମୀଙ୍କୁ ଶ୍ରୀୟା ଚାଣ୍ଡାଲୁଣୀ
ଜଗନ୍ନାଥଙ୍କୁ ସାଲବେଗ ପ୍ରେମରେ କରିଥିଲେ ଗୁଣି।

ଧରିଲେ ସମକୋଣୀ ତ୍ରିଭୁଜ ଆକାର
ଜଗା, ବଳିଆ ବୁଲିଲେ ବାର ଦୁଆର।

ତ୍ରିଭୁଜର କୋଣ ହୋଇଲେ ସ୍ଥୁଳ
ଅସମାନ ବାହୁରେ ମାରିବାକୁ ପଡ଼େ ଚୂଳ।

ରାବଣ ନିଧନ କିମ୍ବା ସୀତା ବନବାସ
ସ୍ଥୁଳ ମନର ଏକ ଏକ ପରିପ୍ରକାଶ।

ସମବାହୁ ତ୍ରିଭୁଜର ପ୍ରତି କୋଣ
ଗୋଟେ ଲେଖେଁ ସୂକ୍ଷ୍ମକୋଣ।

ମୀରାବାଈ ଅଥବା ଗୋପବାଳୀ
ସ୍ୱର୍ଗୀୟ ପ୍ରେମରେ ଗୋଟେ ଆରକୁ ବଳି।

ସମବାହୁ ତ୍ରିଭୁଜର ବାହୁ ସମାନ
ଦୈର୍ଘ୍ୟ କିନ୍ତୁ ନୁହଁଇ ନିର୍ଦ୍ଦିଷ୍ଟ।

ପ୍ରତି କୋଣ ଅଟଇ ଷାଠିଏ ଡିଗିରି
ସୀମାପାର ନ ହେବାପାଇଁ ବଜାଏ ସୁସୁରି।

ବଢ଼ିଲେ କମିଲେ କୋଣର ମାପ
ମନୁଷ୍ୟ ନିଅଇ ଦେବ, ଦାନବର ରୂପ।

ମଣିଷ ଜୀବନ ସବୁଠୁଁ ମହାନ
ପ୍ରେମ ଲାଗି ତା'ର ସ୍ଥାନ ସ୍ୱତନ୍ତ

ପ୍ରେମ ହିଁ ଅମୃତ ସମାନ ଚିଜ
ରୂପରେଖ ଯା'ର ସମବାହୁ ତ୍ରିଭୁଜ।

■■

# କଙ୍କ୍ରିଟ ଜଙ୍ଗଲ

କୋଠାଗୁଡ଼ାକ ଖୁନ୍ଦାଖୁନ୍ଦି ହୋଇ
ଆକାଶକୁ ମୁଣ୍ଡେଇ
ହୋଇଥାନ୍ତି ଠିଆ ।

କୋଠା ପୁଣି ବଢୁଥାନ୍ତି
ଜଙ୍ଗଲିଆ ଗଛ ଭଳି
ହୁ ହୁ ହେଇ
ସହର ଲମ୍ବି ଚାଲିଥାଏ
ଜଙ୍ଗଲକୁ ପଦା କରି ।

ବହୁମହଲା ଫ୍ଲାଟ୍
କାରଖାନା ଚିମିନି
ଶାଳ, ପିଆଶାଳ ଗଛ ପରି
ଦିଶୁଥିଲେ ଡେଙ୍ଗା ।

ଟିଭି, ରେଡ଼ିଓ
ଫୋନ୍ କମ୍ପାନି ଟାୱାର
ପାହାଡ଼ଠୁ ବି ଉଚ୍ଚା ।

ସଡ଼କ, ବଜାର
ନାଳନର୍ଦ୍ଦମା ସବୁଠି
ହୋଇଛି ପକ୍କା, କଙ୍କ୍ରିଟ ।

ସହର ପାଲଟିଛି
କଙ୍କ୍ରିଟ ଜଙ୍ଗଲ
ଦିନିକିଆ ଲୋକଙ୍କୁ
ଦିଶେ ଭାରି ସୁନ୍ଦର।

ନାନା କିସମ ଜଙ୍ଗଲ
ବୈଚିତ୍ର ବି ଭିନ୍ନ ଭିନ୍ନ
ଜଳବାୟୁ, ପରିବେଶ
ସବୁର କାରଣ।

ବିଜ୍ଞାପିତ ଅଞ୍ଚଳ
ପୌରପାଳିକା ସହରଠୁ
ମହାନଗର ନିଗମ
ଘଞ୍ଚ କଙ୍କ୍ରିଟ ଜଙ୍ଗଲ।

ଗଛଲଟାରେ ପରିପୂର୍ଣ୍ଣ
ଜଙ୍ଗଲ ଶୋଭା
ଶାଗୁଆ ବର୍ଣ୍ଣ।

ସହର ଆକାଶେ
ଛାଇ ହୋଇଯାଇ
ବହଳିଆ ଧୂଳି, ଧୂଆଁ
କଙ୍କ୍ରିଟ ଜଙ୍ଗଲ ଦିଶୁଥାଏ
ପାଉଁଶିଆ, ଧୂଆଁଳିଆ।

ନିଘଞ୍ଚ ଜଙ୍ଗଲେ
ସୂର୍ଯ୍ୟ, ଚନ୍ଦ୍ରଙ୍କୁ ଦେଖିବା
ସାତ ସପନ
ଦିନ ଲାଗେ
ରାତି ପରି ଅନ୍ଧାର।

ସହରରେ ଦିନରାତି ସମାନ
ବିଜୁଳି ବତୀରେ
ରାତି ଦିନଠାରୁ ଚମକେ
ଉଜଳ ଆଲୁଅ ପରଶେ ।

ପରଦେଶୀ ବାଟୋଇ
ଜଙ୍ଗଲରେ ବାଟ ହୁଡ଼ି
ହୁଏ ହଟହଟା
ବାଘ, ଭାଲୁ
ହାବୁଡ଼େ ପଡ଼ି
ଦେଇଥାଏ ଜୀବନ ।

ସହର ରାସ୍ତା
ବୁଢ଼ିଆଣୀ ସୂତା ପରି
ହୋଇଥାଏ ଛନ୍ଦାଛନ୍ଦି ।

ନୂଆକରି ସହରକୁ
ଆସିଥିବା ମଣିଷ
ବାଟ ଭୁଲି ଅବାଟରେ ଯାଏ
ରାତି ଆଲୁଅରେ
ରାସ୍ତା ସବୁ
ଏକାପରି ଦିଶୁଥାଏ ।

ଦାଦା-ଗୁଣ୍ଡା, ଚୋର-ଟାଉଟର
ମଉକା ପାଇଲେ
ଅତିଥି ସତ୍କାରରେ
କରନ୍ତିନି ହେଳା ।

ଜଙ୍ଗଲରେ ଲାଗିଲେ ନିଆଁ
ପୋଡ଼ି ପାଉଁଶ ହୁଅନ୍ତି
ପଶୁପକ୍ଷୀ ପଲପଲ ।

ସହରରେ ଲାଗିଲେ
ଦଙ୍ଗାର ନିଆଁ
ଛେଳି, କୁକୁଡ଼ା ଭଳି
ନିରୀହ ମଣିଷ ଦଳ
ଆଗେ ପଡ଼ନ୍ତି ବଳି
ଦେଖି ନ ଦେଖିଲା ପରି
ଅନ୍ୟମାନେ ଯା'ନ୍ତି ଆଡ଼େଇ।

ମଣିଷ ମୁଖା ପିନ୍ଧା ପଶୁ
ସହରେ ଅଧିକ
ଜଙ୍ଗଲିଆ ତାଙ୍କ ସ୍ୱରୂପ।

ଜଙ୍ଗଲର ପଶୁ
ନିଜ ପେଟକୁ
ଚିହ୍ନିଥାଏ ବେଶୀ
ଅନ୍ୟକୁ ସହଜେ
ଦିଏନି ଆହାର।

ଖାଦ୍ୟରେ ତା'ର
ଟିକେ ହେଲେ ଊଣା
ନଖ, ଦାନ୍ତ ଲଗେଇ
ଝୁଣିଦିଏ କଷି
କରିଦିଏ ଛିନ୍‌ଭିନ୍।

ଆଧୁନିକତା ନାମେ
ସହରିଆ ଆଚରଣ
ଜଙ୍ଗଲିଆ ଜୀବଜନ୍ତୁଠାରୁ
କୌଣସି ଗୁଣେ
ନୁହେଁ କମ୍।

ଶାନ୍ତ, ସରଳ
ସହରୀ ମଣିଷ
କାଳେକାଳେ ଅଯଥାରେ
ହୁଏ ହୀନିମାନ।

କଂକ୍ରିଟ ଜଙ୍ଗଲରେ
ମଣିଷର ଆତ୍ମା
କଙ୍କ୍ରିଟ ପାଲଟିଛି
ନାହିଁ ସେଥିରେ ଟିକେ
ପ୍ରାଣର ସ୍ପନ୍ଦନ।

ଆଦବକାଇଦାରେ
ମଣିଷ ବୋଲାଇଛି
ଭଦ୍ର, ଶିକ୍ଷିତ
ଆଧୁନିକ ସହରିଆ।

ଗାଁ ମାଟିକୁ ଛାଡ଼ି
ମଣିଷ ଆଜି
କଙ୍କ୍ରିଟ ଜଙ୍ଗଲ ମୁହାଁ
ପ୍ରକୃତି ତା'ର
ଯାଇଛି ବଦଳି।

ଜଙ୍ଗଲୀ ସ୍ୱଭାବ ମଣିଷ
ସଂସ୍କୃତି ସଂପନ୍ନ ବ୍ୟକ୍ତିତ୍ୱର
କେବେ କ'ଣ ଦେଇ ପାରେ
ପ୍ରକୃତ ପରିଚୟ !



# ପରଚକ୍ଷୁ

ଚକ୍ଷୁର ଚକ୍ଷୁ ପରଚକ୍ଷୁ
ଆବାଳବୃଦ୍ଧବନିତା ସଭିଙ୍କର ସିଏ
ନୟନ ପିତୁଳା।

ରଙ୍ଗବେରଙ୍ଗ ଚଷମା
ଶିଶୁର ପ୍ରିୟ ଖେଳନା
ପିନ୍ଧି ତାକୁ ମଜାରେ
ଧରାକୁ ଦେଖେ ସେ
ନୂଆ ନୂଆ ରଙ୍ଗରେ
ମିଠା ମିଠା ସ୍ୱପ୍ନ ଦେଖେ
ସୁନେଲି ଭବିଷ୍ୟତ ଆଶାରେ।

କିଶୋର, ତରୁଣ
ଚଷମା ନାଏ ସଉକରେ
ରୋମାଣ୍ଟିକ ଜୀବନ ଜିଇବାରେ
ହୋଇଥାନ୍ତି ବ୍ୟାକୁଳ

ପ୍ରେମିକ ପ୍ରେମିକା ପ୍ରେମରେ
ଆଣଇ ତାହା ଚମକ।

ଧଇଲେ ଚାଳିଶା
ଆସିଲେ ବୃଦ୍ଧାବସ୍ଥା
ଅନ୍ଧର ଲଉଡ଼ି ପରି
ଲୋଡ଼ା ହୁଏ ଚଷମା
ଦୃଷ୍ଟି ଶକ୍ତିକୁ ନେଇ
ଲେନ୍‌ସର କ୍ଷମତା
ହୋଇଥାଏ କମ୍, ବେଶି।

ପଥଚାରୀ, ମହାକାଶଚାରୀ, ସନ୍ତରଣକାରୀ
କାରଖାନା ଶ୍ରମଜୀବୀ ଅବା
ଆଉ କାହା ପାଇଁ
ପରଚକ୍ଷୁ ଅପରିହାର୍ଯ୍ୟ
ନୋହିଲେ ବାଧା ଘଟେ କାର୍ଯ୍ୟ
ଆଖିରେ ଲାଗେ ଆଘାତ।

ପରଚକ୍ଷୁରେ ଦେଖିଲେ ଦୁନିଆ
ଲାଗେ କଲା ପରି କିମିଆ
ପଡ଼ିଲେ ଗୁଣିଆ ପିଛା
ଜୀବନ ହୁଏ ହତାଶିଆ।

ରଙ୍ଗିନୀ ମନ ନେଇ ବଞ୍ଚିବା
ମଣିଷ ଅନ୍ତର କଥା
ହେଲେ ସୀମାରେଖା ଗଲେ ଡେଇଁ
କାଳ ରହିଥାଏ ଅନେଇ
ବାଘ ପରି ଛକି ବସିଥାଏ
କହଲେଇ କହଲେଇ

ନଖ ଦାନ୍ତ ମାରି
ରକ୍ତ ନିଏ ଶୋଷି ।

ବନ୍ଧା ଛନ୍ଦାର ଜୀବନ
କେବେ ହୋଇନି କି
ହୋଇପାରିବନି
ନିଜକୁ ନିଜେ
ସ୍ୱୟଂ ସଂପୂର୍ଣ୍ଣ ।

ନିର୍ଭରଶୀଳତା ନୁହଁଇ ପରମୁଖାପେକ୍ଷିତା
ଯଦି ରହିଥାଏ ସହଭାଗିତା
ଆଣିଥାଏ ଜୀବନରେ ପରିପୂର୍ଣ୍ଣତା
ଅଯଥାରେ ପତେଇଲେ ହାତ
ମଣିଷପଣିଆ ହୁଅଇ ବରବାଦ ।

■■

# ଗ୍ରୀଷ୍ମ

ଋତୁ ମଧ୍ୟେ ଗ୍ରୀଷ୍ମ ପ୍ରଥମ
ବହି ଆଣେ ଭାରି ଗରମ
ଖାଇ ସୂର୍ଯ୍ୟଙ୍କ ଛାଟ
ଦିନ ବଡ଼ ରାତି ଛୋଟ।

ଦିବାକର ଗ୍ରୀଷ୍ମ ଅଧିପତି
ଦିବସର ସେ ସ୍ବପତି
ଦିନାଂଶକୁ ନେଇ
ରଚନ୍ତି ଜୀବନ
ପୁଣି ଦିନପତି।

ଖରାଦିନ ସକାଳ
ଲାଗେ ଟିକେ ଶୀତଳ
ଶେଯ ଛାଡ଼ିବାକୁ ଜମା
ବଳେନି ମନ।

ମାତ୍ର କର୍ତ୍ତବ୍ୟର ଆହ୍ୱାନ
ସକାଳୁଆ ଗଲେ ସବୁ କାମ
କରିଲେ ଉଚ୍ଛୁର
ଦିନଗୋଟାକ ହୁଏ ବିଭ୍ରାଟ।

ଗ୍ରୀଷ୍ମର ସକାଳ
ଶୈଶବ କାଳ
ପ୍ରତି କାମ ନ କରିଲେ ସଅଳ
ଜୀବନରେ ରହିବନି ତାଳମେଳ।

ସକାଳ ନ ସରୁଣୁ
ଖରା ହୁଏ ଟାଣ
ସୂର୍ଯ୍ୟ ଯେତିକି ଉଠେ
ଉପରୁ ଉପର
ତାତି ବଢୁଥାଏ
ସେତିକି ପ୍ରଖର।

ଯୌବନ ଆଡ଼କୁ କୈଶୋର
ହେଲେ ଅଗ୍ରସର
ଚପଳତା ବଢ଼ଇ ବେଳକୁବେଳ
ଧାବେଳି ବାଣ ସମ
ହୋଇ ତୀବ୍ରତର।

ମଧ୍ୟାହ୍ନର ଖରା
ଲାଗେ ଟାଇଁ ଟାଇଁ
ମୁଣ୍ଡମାରେ ଝାଇଁ ଝାଇଁ
ପିଟୁଥାଏ ଝାଞ୍ଜି
ତୁହାକୁ ତୁହା।

ଯୌବନର ପରିପକ୍ୱତା
ଦେହରେ ଭରେ ଶକ୍ତିମତା
ମନରେ ଆଣେ ଆବେଗ ପ୍ରବଣତା।

ଡହଡ଼ହ ତତଲା ପବନ
ମେଘ ଧୂମାଳକୁ ଡାକିଆଣେ କାଁ ଭାଁ

ଚାଳ ଉଡ଼ି, ଡାଳ ଭାଙ୍ଗି
ହୋଇପଡ଼େ ନଷ୍ଟଭ୍ରଷ୍ଟ
ସେତିକି ସମୟ ମାତର
ମିଳଇ ଶାନ୍ତିର ଉପଚାର।

ଯୁବକର ଉଦ୍ଦାମତା
ବିପଦକୁ କରଇ ବରଣ
ସାଥେ ଆଣିଥାଏ ପରିବର୍ତ୍ତନ
ଚଣ୍ଡାଶୋକ ହୁଏ ଧର୍ମାଶୋକ
ମାନବଧର୍ମର ସାଜେ
ବିଶ୍ୱ ପ୍ରଚାରକ।

ଛାଇ ଲେଉଟାଣି ସନ୍ଧ୍ୟା ସମୟ
ଦେହକୁ ଲାଗଇ ଆରାମ
ବହୁଥାଏ ସେତେବେଳେ
ମନ୍ଦ ମନ୍ଦ ପବନ।

ମାନବକୁ ଛାଡ଼ି
ମାଧବ ସେବାରେ
ନ ମିଳଇ ପୁଣ୍ୟ
ଧର୍ମଫଳ ବିନା
ବାର୍ଦ୍ଧକ୍ୟ ଜୀବନ
ହୁଏ ଡହଳବିକଳ
ଗ୍ରୀଷ୍ମକାଳୀନ ସନ୍ଧ୍ୟା ଲାଗେ ଯେମିତି
ଯଦି ପଡ଼ିଯାଇଥାଏ ପବନ।



# ତେଲିଙ୍ଗିବାଜା

ପାଲିଙ୍କି ଚଢ଼ି ମୁକୁଟ ପିନ୍ଧି
ବର ଆସୁଥିଲା
ରାଜାର ଠାଣିରେ ଝୁଲିଝୁଲି
ମାର୍‌କୁଣ୍ଡି ବିଚରା
ପାରିଷଦ ପରି ମୁଣ୍ଡ ନଡ଼କେଇ
ନିଦ ମଳ ମଳ ଆଖିରେ
ମାରୁଥିଲା ହାଇ।

ଗାଁ ଠାକୁରାଣୀ ବରଗଛ ମୂଳୁ
ଉଛୁଳୁ ହୋଇଥିଲା
ଜାକଜମକରେ ରୋଷଣି
ଦାଣ୍ଡଦୁଆରେ ବୋହୂ ଭୂଆସୁଣୀ
ଚାହିଁଥିଲେ ମୁଣ୍ଡେ ଦେଇ ଓଢ଼ଣି।

ବରକୁ କନିଆଁ କେମିତି ମାନୁଛି
କରୁଥିଲେ ଟାହି ଟାପରା
ବାଟକୁ ଆଗୁଳି ଭେଦା ମାଗୁଥିଲେ
କନିଆଁ ଗାଁର ଛୋକରା।

ବରଯାତ୍ରୀ ଦଳ
ଗଙ୍ଗା ଷଣ୍ଢ ଭଳି
ଝୁମୁଥିଲେ ଆଡ଼ି ପକେଇ
ମୁରିବ ଲୋକେ ବୁଝେଇ ଶୁଝେଇ
ନଉଥିଲେ ବାଟ କଢ଼େଇ।

ଢୋ ଢ଼ା କରି ବାଣ ଫୁଟୁଥିଲା
ଚଉଦିଗ ସାରା କମ୍ପେଇ
ଉଡିଆଣି ଛୁଆ ଚିର୍‌ଚିରେଇ
ମା କୋଳେ
ମୁହଁ ଦେଉଥିଲେ ଲୁଚେଇ।

ଅବୁଝା ପିଲାଏ ରାହା ଧରୁଥିଲେ
ହାତଗୋଡ଼ ପିଟି ତୁହାଇ ତୁହାଇ
ସୂତପୁତ୍ର ଯେସନେ ଯାଇଥିଲା ଭାସି
କୁଆଁ କୁଆଁ ଡାକ ପକେଇ।

ବାଣ ଆଲୁଅର ଭେଳିକି ଦେଖି
ଲୋକବାକ ସବୁ ଯାଇଥିଲେ ଭଳି
କୁନ୍ତୀ ସିନା ହୋଇଗଲେ ସତୀ
କର୍ଣ୍ଣର ମାନ ମହତ ଲାଗିଲା ବାଜି।

ସୂରୁଜ ଦେବତା ପାଣିଗ୍ରହଣର
ହେଉଛନ୍ତି ମୁଖ୍ୟ ସାକ୍ଷୀ
ଦିନଟା କିନ୍ତୁ ରୋଷଣି ଆଲୁଅକୁ
ନ ପାରଇ ମୋଟେ ଦେଖି।

ସାବିତ୍ରୀ କେବଳ ଭାଙ୍ଗି ପାରଇ
ଦିବାକର ଟାଣ ପଣ
ପତିବ୍ରତା ଅଟଇ ନାରୀର
ସବୁଠୁଁ ମହାନ୍ ଗୁଣ।

କନ୍ୟାରତ୍ନଠାରୁ ଜଗତେ ନାହିଁ
ଆଉକିଛି ଅମୂଲ୍ୟ ଧନ
କନ୍ୟାଦାନ କଲେ ମିଳଇ
ଯୁଗଯୁଗର ମହାପୁଣ୍ୟ।

ତେଲିଙ୍ଗିବାଜାର ତାଳ ଲୟ ସୁରେ
ପ୍ରଜାପତିଙ୍କର ହୁଅଇ ଧରାବତରଣ
ବ୍ରାହ୍ମଣର ମନ୍ତ୍ର ଉଚ୍ଚାରଣେ
ବର, କନ୍ୟା ପ୍ରାଣ ଦ୍ୱୟ
ଚିରଦିନ ଲାଗି ହୁଏ ମିଳନ।

ସ୍ୱାମୀ-ସ୍ତ୍ରୀ ପ୍ରେମ ନୁହଁଇ କଦାପି ମଳିନ
ଅଟଇ ତାହା ସତ୍ୟ, ସନାତନ
ଭାରତ ଭୂଇଁରେ ଦାମ୍ପତ୍ୟ ଜୀବନ
ସରଗ ସୁଖଠୁଁ ବଳି ମୂଲ୍ୟବାନ।

■■

# ବୈଶାଖୀ

ଦାଣ୍ଡବାଲିରେ ଧାନ ପଡ଼ିଲେ
ଛତୁ ଭଳି ଖଇ ଫୁଟୁଛି
ଚୁଆ, ଗାଡ଼ିଆର
ମନ୍ଦା ମନ୍ଦା ପାଣି
ତତଲା ପେଯ ପରି ଲାଗୁଛି ।

ପବନଟା ସତେ ଯେମିତି
ଚୁଡ଼ା, ମୁଢ଼ି ଭଜା ବେଳ
ହାଣ୍ଡିରୁ ଧଇଁ ପେଲୁଛି ।

ଘରିଆଡ଼େ ହୁରି ପଡ଼ିଛି
ବଇଶାଖୀର ଏକଛତ୍ରବାଦ
ରାଜ୍ ଚାଲିଛି ।

ବିରୋଧୀ ଆସନେ
ଜୀବନ ବସି
ନିର୍ଘାତିଆ ହାଇ ମାରୁଛି।

ଜୀବଜଗତ ବିଗ୍ଭରା
ମରୀଚିକାମୟ ଗଣତନ୍ତ୍ରେ ଫସି
ପାଣି ପାଣି ବୋଲି
ତହଲ ବିକଳ ହେଉଛି।

ଗ୍ରୀଷ୍ମର ହାକିମାତିରେ
ଆଇନ୍‌କାନୁନ୍ ପେସ୍ ହେଉଛି
ମରୁମୟ ସମ୍ବିଧାନେ
ଧରାର ଶାସନ ବନ୍ଧା ପଡ଼ିଛି।

ମରୁଭୂମିରେ କେବଳ ଉଠେନି
କଣ୍ଟାଗଛ କିମ୍ବା ବାଲିଝଡ଼
ନିଜକୁ ବାଜି ଲଗେଇ ଖୋଜିଲେ
ମିଳଇ ମରୁଉଦ୍ୟାନ।

ତହତ୍ତହ ତାତେ
ତଣ୍ଟି ଅଠା ହୋଇ
ପାଟି ମାରଇ ଲୁଣି
ହେଲେ ଖଜୁରିର ସୁଆଦ
ଅମୃତକୁ ଯାଏ ବଳି।

ବଇଶାଖୀ ନୁହଁଇ କୁଳଟା
ସୀତା ପରି ସିଏ ପତିପରାୟଣା
ସତୀତ୍ୱର ପରାକାଷ୍ଠା ଦେଖାଇ
ଜନକନନ୍ଦିନୀ ଅଗ୍ନିପରୀକ୍ଷାକୁ ନେଇଥିଲେ
ସମାଜ ପାଇଁ ଆପଣେଇ।

ସତୀର ବାକ୍ୟ ବାଣେ
ଫାଟିଥିଲା ମେଦିନୀ
ସ୍ୱର୍ଣ୍ଣମୟୀ ଲଙ୍କା
ହୋଇଥିଲା ଛିନିଭିନି ।

ଆପେ ହୁଏ ସିନା ପାତାଳଗାମିନୀ
ସୀମନ୍ତିନୀର ସେ ମଉଡ଼ମଣି
ନୀତିରୁ କେବେ ବାହାର ହୁଏନି
କର୍ତ୍ତବ୍ୟବୋଧରେ ମୁହଁକୁ ଟାହେଁନି ।

ବଇଶାଖୀ ଚୁମ୍ୱନେ
ଜଗତେ ବଢ଼ଇ ଉତ୍ତାପ
ରବିର ଖର ଶ୍ୱାସ
ଝଞ୍ଜା ହୋଇ ବହେ ଘନଘନ
ତ୍ରାହି ତ୍ରାହି ଡାକେ ଜୀବନ
ବହି ଆଣେ ମୌସୁମୀ ପବନ ।

ନିବିଡ଼ ସ୍ନେହ, ପୀରତି ବିନା
ଭଲ ପାଇବାରେ
ପଡ଼େନି ଭିତ୍ତି ପ୍ରସ୍ତର
ଅନ୍ତରେ ରହି
ଯାହା ଧରି ରଖିଥାଏ
ନଭସ୍ପର୍ଶୀ ପ୍ରେମର ମୀନାର ।

ନିଅଁଟା ଦୃଢ଼ ହୋଇଥାଏ
ଯଦି ଖାଇଥାଏ
ଶକ୍ତ ଧୁରୁମୁସ ପାହାର ।

ଅନ୍ତୁଡ଼ିଶାଳାରେ ଗଢ଼ ନିଅଁ ପୁଣି
ଶିଶୁ ଲଭଇ ବଳିଷ୍ଠ ଶରୀର

ବଉଣାଖୀ ଅଟଇ କାଳର ନିଦାନ
ଧରାକୁ କରଇ ପ୍ରତିପାଳନ।

ବଉଣାଖୀ ସୂରୁଜ ରୋଷଣି ଢାଳି
ପ୍ରକୃତି ସାଥେ ଜୀବନର
କରଇ ମହାମିଳନ
ଆତ୍ମା, ପରମାତ୍ମାର
ହୁଅଇ ସଂଗମ।

■■

# ପରୀକ୍ଷାର ପରିଭାଷା

ପରୀକ୍ଷାର ପ୍ରୋଗ୍ରାମ
ଗୋଟାଏ ଟାଇମ୍‌ବମ
ବେଳ କିଛି ହୋଇପାରେ ଆଗପଛ
ସମସ୍ତଙ୍କ ଘଡ଼ି ନ ଥାଏ ସମାନ
ହେଲେ ଫୁଟିବା ନିଶ୍ଚିତ।

ଯେଉଁମାନେ ପଢ଼ନ୍ତିନି ପାଠ
ପରୀକ୍ଷା ପ୍ରୋଗ୍ରାମ ବାହାରିଗଲେ
ଟାଇମ୍‌ବମ୍ ଫୁଟିବା କଥା
ଶୁଣିଲା ପରି ଆଗେ ଆଗେ
ଲାଗେ ତାଙ୍କୁ ଛାନିଆ।

ପରୀକ୍ଷା ଘୁଞ୍ଚା ଅଭିଯାନ
ଗଣ୍ଡଗୋଳ ହରତାଳ
ଅଯଥା ସମୟର ବରବାଦ।

ଆଜି ନ ହେଲେ କାଲି
ପରୀକ୍ଷା ହେବାଟା ଥୟ
ବାହାଘର ବେଳେ
ବାଇଗଣ ରୁଆ
କାମକୁ ପାଇବା
ନୁହେଁ ଏତେ ସୋଜା।

ସମୟର କରିଲେ
ଯଥା ବିନିଯୋଗ
ପରୀକ୍ଷା ପାଇଁ
ରହିବନି ଡର
ଫଳ ଭଲହେବାର
ମିଳଇ ସୁଯୋଗ।

ପରୀକ୍ଷା ଏକ ଡଙ୍ଗା
ଏ ପାରିରୁ ସେ ପାରିକୁ ନିଏ
ଆଶା ବିଶ୍ୱାସକୁ
ସୁଦୃଢ଼ କରାଏ।

ମାରି ନ ଜାଣିଲେ
କାତ, ଆହୁଲା
କାଣ୍ଡାରିକୁ ସଦା
କଲେ ଆଶରା
ବିପଦକୁ ଆପେ କରିବା ବରଣ
ଦୋଷ ନେବେ ଅନ୍ୟଥା
ଭାଗ୍ୟ, ଭଗବାନ।

ସୁଅର ଅନୁକୂଳେ ଡଙ୍ଗା ବାହିବା
ନୁହେଁ ବଡ଼ କଥା
ଡଙ୍ଗା ଚାଳନାରେ ନ ହେଲେ ଦକ୍ଷ

ଅଥଳ ସମୁଦ୍ରକୁ ଭାସିଯିବା
କେତେବେଳେ କିଛି ନୁହେଁ ଅସମ୍ଭବ।

ପ୍ରତିକୂଳେ ଯାତ୍ରା କଲେ
ହୋଇଥାଏ କଷ୍ଟକର
ରୋମଯାଏ ଟାଙ୍କି
କାତ, ଆହୁଲା ମାରିବାରେ
ହାତ ହୁଏ ଦୋରସ୍ତ।

ଝଡ଼ ତୋଫାନ, ପ୍ରଖର ସ୍ରୋତର
ପ୍ରତିବନ୍ଧକକୁ କାଟି
ନିପୁଣ ନାଉରି କେବଳ
ଆରକୂଳ ଘାଟକୁ
ମଙ୍ଗ ଦିଏ ବଙ୍କେଇ
ଜୀବନଠୁଁ ଦୂରେଇ ଯିବାରେ
କେବେ ନ ଥାଏ ଫାଙ୍କି।



# ମୁଁ

ଜନମିଲେ ଶିଶୁ
ଡାକେ କୁଆଁ କୁଆଁ
ଜଣାଇଦିଏ ସେ
ଆସିଲା ଦୁନିଆ
ମା ଥନ ନ ପାଇ
କାନ୍ଦେ ତୁହାଇ ତୁହାଇ ।

ସବୁ ମୋର ବୋଲି
ଜିଦିକରି ଧରେ ରାହା
ଆଖିରୁ ବୁହାଏନା
ଟୋପାଏ ଲୁହ
ଖାଲିଟାରେ ଉଠଉଥାଏ କୋହ ।

ତେଜି ପାରେନି
ଚିକିମିକି ଆଲୁଅର ଆକର୍ଷଣ
ନିଆଁକୁ ଧରି ଖାଏ ଚିଆଁ
ଆବାଲ୍ୟରୁ ମଣିଷ ମୋହଗ୍ରସ୍ତ
ମୁଁ, ମୋର କହି ପାଏ ଦୁଃଖ ।

ମାଙ୍କଡ଼଼ଟା ହୋଇ
ବୁଝିଥିଲା ହନୁ
ଜୀବନର ସତ୍ୟାସତ୍ୟ
ଲାଞ୍ଜରେ ସଂଯୋଗି ଅନଳ
ଲଙ୍କାକୁ ପୋଡ଼ି କଲା ପାଉଁଶ
ଅକ୍ଷତ ରଖି ତା' ଶରୀର ।

ଲଙ୍କାର ନରେଶ ରାବଣ
ଶେଷେ ହୋଇଥିଲେ ନତଜାନୁ
ସୀତା ଉଦ୍ଧାର
କୋଉ ବା ହୋଇଥା'ନ୍ତା
ନ ଥିଲେ ପବନ କୁମାର ।

ରାବଣର ସରଗକୁ ନିଶୁଣି
ନୁହଁଇ ମନଗଢ଼ା କାହାଣୀ
ସ୍ରଷ୍ଟା ସଙ୍ଗେ ଯୁଝିଥିଲା
ଧରାକୁ ସେ ସରା ମଣି
ରାମଚନ୍ଦ୍ର ଛେଦିଥିଲେ
ଦଶାନନ ମୁଣ୍ଡ ଗଣି ଗଣି ।

ଅଞ୍ଜନାର ସୁତ ଜପୁଥିଲା
ନିରନ୍ତର ରାମ ସୀତା
ଯୋଜନ ଯୋଜନ ପାରାବାର ଲଘି
ସେ ହିଁ ଏକା
ଜାନକୀର କରିଥିଲା ପତା ।

ମନରେ ନ ଥିଲା
ତା' ବୀରଦର୍ପର
ଲେଶମାତ୍ର ଅହଂ ସତ୍ତା

ଦେବତା ରୂପେ ଯୁଗେ ଯୁଗେ
ମହାବୀର ନାମେ ପାଉଛି ପୂଜା।

ଅଣୁ ପ୍ରକାଶଇ
ପଦାର୍ଥର ଗୁଣାଗୁଣ
ପରମାଣୁ ବିନା ନୁହଁଇ
କେବେ ସେ ସ୍ୱୟଂ ସଂପୂର୍ଣ୍ଣ
ବସ୍ତୁ ମଧ୍ୟେ ବିଦ୍ୟମାନ
ଉଭୟର ଅତୁଟ ବନ୍ଧନ।

'ମ'ର ଅଭାବେ
'ମୁଁ'କାର ଟଳିପଡ଼େ
ଘୁଣଖିଆ ମହାଦ୍ରୁମ ତୁଲ୍ୟ।

■■

# ଅନେଶତ ମହାବାତ୍ୟା

ସେ ଥିଲା କରାଳ ରାତି
ଦୁଃଖଦ ଅନୁଭୂତିର ସ୍ମୃତି
ବର୍ଷା, ପବନ ଧରିଥିଲେ
ଉଗ୍ର ମୂରତି
ପରସ୍ପରର ହୋଇଥିଲେ
ପ୍ରଚଣ୍ଡ ପ୍ରତିଯୋଗୀ।

ବହୁଥିଲା ଅଣଓଝଣ ପବନ
ଭୟଙ୍କର ଥିଲା ତା'ର
ସୁ ସୁ ଗର୍ଜନ
ବିରାଟକାୟ ଡାଇନୋସର, ଅଜଗର
ଯେମିତି କରନ୍ତି ଆକ୍ରମଣ।

ରାତି ଯେତିକି ଘନଉଥିଲା
ପବନର ବେଗ ବଢ଼ି ବଢ଼ି
ହିଂସ୍ର ରୂପ ଧାରଣ କରୁଥିଲା।

ତୋଫାନର ନ ଥିଲା କିଛି
ନିର୍ଦ୍ଦିଷ୍ଟ ଦିଗ, ବେଗ
ଭୁସ୍‌କିନା ମାଡ଼ିଆସି
ଘୁଦାଳି ପକଉଥିଲା
ମୋଡ଼ିମାଡ଼ି, ଉପାଡ଼ିଫୋପାଡ଼ି
ଧରାକୁ ଛାରଖାର କରୁଥିଲା ।

ଗଛଡାଳ, ଟିଣ, ଦସ୍ତା, ଆଜ୍‌ବେଷ୍ଟସ
ଆକାଶେ ଉଡୁଥିଲେ
ଖଣ୍ଡା ପରି ମାରାତ୍ମକ ହୋଇ ।

ଗଳ ଘର ଛପର
ହରାଇଥିଲା ଚିହ୍ନବର୍ଣ୍ଣ
କୋଠାଘର ଥିଲା ଅକ୍ଷତ
ଦୁଲୁକିଲା ପରି ଲାଗୁଥିଲା
ବେଳେବେଳେ ବାଜି ବତାସ ପବନ ।

ପୁରୁଣା କୋଠାଘରବାଲା
ଗଣୁଥିଲେ ପ୍ରମାଦ
ଘଟିପାରେ କେତେବେଳେ
କିଛି ଅଘଟଣ ।

ମୁଷଳ ଧାରାର ବର୍ଷା
କଟକକୁ କରିଥାଏ ବେହାଲ୍
ଘରେ ପଶି ନର୍ଦ୍ଦମା ପାଣି
ମାରୁଥାଏ ଲହଡ଼ି ।

ଖଟ ଉପରେ
ଟେବୁଲ୍ ପକେଇ ବସିଲେ ବି
ମିଳେନି ନିସ୍ତାର ।

ଇଏ ହେଉଛି
ଅନେଶତ ମହାବାତ୍ୟା
ବିଭୀଷିକାର ଇସ୍ତାହାର ।

ଦେଖୁ ଦେଖୁ
ସାପଟାଏ ଚଢ଼ି ଆସିଲା
ଟିଭି ଉପରକୁ
ପଛେ ପଛେ
ବେଙ୍ଗ ଗୋଟାଏ ଭାସି ଆସି ବସିଲା
ନିରବ, ନିଶ୍ଚଳେ ତା' ପାଶେ ।

ଡରିଯାଇ କବାଟ ଖୋଲିଦେଲି
ବାହାରେ ଦେଖିଲି
ଭାଙ୍ଗି ପଡ଼ିଥିବା ଦୋକାନ, ଗୋଦାମ
ହେଉଛି ଲୁଟ୍‌ପାଟ ।

ଚାରିଆଡ଼େ ଶୁଭୁଥିଲା
ଦୁଲ୍‌ଦାଲ୍, ଭୁସ୍‌ଭାସ୍
ମଝିରେ ମଝିରେ
ଆର୍ତ୍ତ ଚିତ୍କାର
ଘରୁ ଗୋଡ଼ କାଢ଼ିବା ପାଇଁ
କୁଳାଉ ନଥିଲା ସାହସ ।

ରାତି ପାଇ ସକାଳ ହେଲା
ବର୍ଷା, ପବନ ତାଣ୍ଡବ
ଧିରେ ଧିରେ ଥମି ଆସିଲା ।

ରିଲିଫ୍‌ବାଲା ସଜବାଜ ହୋଇ
ଆସିଲା ବେଳକୁ
ଗଡ଼ିଥିଲା ଦିନ ଦି ପହର ।

ଭାଙ୍ଗିଥିବା ଗୁହାଳବାଲା
ରିଲିଫ୍ ସାହାଯ୍ୟ ପାଇଲା
ବସ୍ତି ବାସିନ୍ଦା
ସ୍କୁଲ, କଲେଜ ଘରେ
ମୁଣ୍ଡ ଗୁଞ୍ଜି ଭୋକ ଉପାସରେ
ହେଉଥିଲେ ହଟହଟା ।

ସମୁଦ୍ର ଲଙ୍ଘିଥିଲା କୂଳ
ଜୁଆର ଉଠିଥିଲା
ନଡ଼ିଆଗଛ ପ୍ରମାଣ ।

ସମୁଦ୍ରକୂଳିଆ ଅଞ୍ଚଳ
ହୋଇଥିଲା ଅଧିକ ଖିନିଖରାପ
ମରିହଜି ଯାଇଥିଲେ
ଲୋକବାକ ଅନେକ ।

ଦଳ ଦଳ ନେତା, ସ୍ୱେଚ୍ଛାସେବୀ
ବାତ୍ୟା ଅଞ୍ଚଳକୁ
ଯାଉଥିଲେ ରିଲିଫ୍ ଧରି
ସାଙ୍ଗରେ ଥିଲେ
ସାମ୍ବାଦିକ, ଫଟଉଠାଳି ।

ଦାଦା ଟୋକା
ରିଲିଫ୍ ଗାଡ଼ିକୁ ଲୁଟି
ଚଢ଼ାଦରରେ ମନମାଫି
ଦରକାରୀ ଜିନିଷକୁ
ବିଚ୍ ବଜାରରେ
କରୁଥିଲେ ବିକ୍ରି ।

ଆଉ କିଛି ବାହାରିଥିଲେ
ସମୁଦ୍ରକୂଳ ଗାଁ ଗଣ୍ଡାକୁ

ନିରାଶ୍ରୟା ଯବାନୀ
ଝିଅ, ବୋହୂଙ୍କୁ
ଦୟା ଦେଖାଇ
କରିବେ ଦେହ ବେଉସା ।

ଉଜୁଡ଼ି ଯାଇଥିବା ଘରୁ
ଲୁଟି ଆଣିବେ
ଦାମୀ ଜିନିଷପତର ।

ମଣିଷର ସ୍ୱାର୍ଥପର ପ୍ରକୃତି
ଇତର ଜନ୍ତୁଠାରୁ
କେତେ ହୀନ
ବିପର୍ଯ୍ୟୟ, ଦୁର୍ବିପାକ
ଦେଇଥାଏ ତା'ର
ଅସଲ ପ୍ରମାଣ ।



# ରଜ ଯାଉଛି ହଜି

ବାପାବୋଉ ଆରପାରିକୁ ଯିବାର
ଦୀର୍ଘବର୍ଷ ପରେ
ଯାଉଥିଲି ଗାଁକୁ
ରଜ ପାଳିବାକୁ ।

ରାସ୍ତା ଭାଙ୍ଗି
ଗାଁ ମୁହାଁ ହେଲି
ଲିପାପୋଛା ମାଟିଘର
ଆଖିରେ ପଡ଼ିଲାନି ମୋତେ ।

ଗାଁ ଦାଣ୍ଡ ଦିକଡ଼େ
କୋଠାଘର ଠିଆ ହୋଇଥିଲେ
ଧାଡ଼ିକି ଧାଡ଼ି ।

ଗାଁ ଦାଣ୍ଡ
ପକ୍‌କା ହୋଇ
ଦିଶୁଥାଏ ଚକାଚକ
ଧୂଳିମଳି ନ ଥାଏ ବିଶେଷ ।

ଦାଣ୍ଡ ପାହାଚରେ
ଗୋଡ଼ ପଡ଼ିଲା ବେଳେ
ମନେ ପଡ଼ିଗଲା ବୋଉ
ଓଢ଼ଣା ଟାଣି ଦାଣ୍ଡଦୁଆରେ
ଆସିବା ବାଟକୁ ମୋ
ରହୁଥିଲା ଚାହିଁ।

ରଜ ପୂର୍ବଦିନ ସଜବାଜ
ବୋଉର ନଥାଏ
କାମରୁ ଛୁଟଣ।

ହଳଦି, ବାଟଣ ବାଟି
ଚୂନା କୁଟି, ପରିବା କାଟି
କାମ କିଛି
ରଖି ନ ଥାଏ ବାକି।

ରଜ ତିନିଦିନ
କଟା, ବଟା
ହୋଇଥାଏ ମନା।

ସରି ସରି ପୂର ଦିଆ
ରଜ ପୋଡ଼ପିଠା
ସୁଆଦ, ବାସନା
ମନରେ ମୋ
ଉଙ୍କି ମାରୁଥିଲା ବରାବର।

ସିଧା ଧାଇଁଗଲି
ଚୁଲି ମୁଣ୍ଡକୁ
ବୋଉ ଯୋଉଠି
ଘଷି, କାଠ ଜାଳି

କଦଳୀ ପତରେ
ସେଦୁଅ ପୂରେଇ
ପୋଡୁଥିଲା ପିଠା ।

କାଠଚୁଲି ହୋଇଛି ଉଭାନ
ତା ଜାଗାର
ସ୍ଥାନ ନେଇଛି
ଇଲେକ୍‌ଟ୍ରି, ଗ୍ୟାସ ଚୁଲା ।

ପ୍ରେସର କୁକର, ଓଭେନର
ସିଝା ପିଠା
ସେ କାହୁଁ ଦବ
ପାଉଁଶ ଲଗା
ରଜ ପୋଡ଼ପିଠାର ମୃଜା ।

ନାନା ମସଲାର
ଗୋଟା ରଜପାନ
ହୋଇଛି ସପନ
ପାନ ଭାଙ୍ଗି ବାଣ୍ଟିବାକୁ
କେହି ବଳାଉନି ମନ ।

ନରିଆ ଗୁଡ଼ିଆ
ଖିଲିପାନ ଦୋକାନ
ପାନଡାଲା, ବଟୁଆକୁ
କରିଦେଇଛି ଉଭାନ ।

ଗାଁ ମୁଣ୍ଡ ବରଗଛେ
ଲାଗିନି ଦୋଳି
ପିଲାଝିଲା ଥିବା ଘରେ
ଝୁଲିଛି ପ୍ଲାଷ୍ଟିକ ସୂତା
ତିଆରି ଝୁଲା ।

ଝିଅବୋହୂ ଟିଭି ଦେଖାରେ
ଯାଇଛନ୍ତି ମଜି
ଦୋଳି ଖେଳକୁ
ଏକବାର ଯାଇଛନ୍ତି ଭୁଲି ।

ହାଡ଼ିସାହି ପିଲା କିନ୍ତୁ
ଖେଳୁଥା'ନ୍ତି ବାଉଁଶ ଦୋଳି
ବରଗଛେ ବାନ୍ଧି ।

ଟିଭି ବାଲା
ଉଠଉଥା'ନ୍ତି ଫଟ
ସତେ ଅବା
ନୂଆ ଦେଖିବାର ଜିନିଷ ।

ଅଜାତି, ଅଶିକ୍ଷିତ
ସଂସ୍କୃତିକୁ କେବେ
କରନ୍ତିନି ପର ।

ଶିକ୍ଷିତ ମଣିଷ
ପ୍ରଥା, ପରଂପରାକୁ
ଲୋକ ଦେଖାଣିଆ କରି
ସଂଗ୍ରହାଳୟେ ସାଇତି
ବୋଲାଏ ସଂସ୍କୃତି ସଂପନ୍ନ ।

ଖାସି ବାନ୍ଧି
ବାଜି ମରାମରି
ବାଗୁଡ଼ି ଖେଳ
ରଜରେ ଦେଖିବା
ଗାଁରେ ଆଜି ବିରଳ ।

ଗାଁ ପଡ଼ିଆରେ
ଠିଆ ହୋଇଛି
ବାତ୍ୟା ଆଶ୍ରୟସ୍ଥଳୀ ।

ଗାଁ ଟୋକା
ନାଲିପାଣି ମାରି
କ୍ରିକେଟ, ସିନେମାକୁ ନେଇ
କରନ୍ତି ସେଠି ଖଟି
ଧିରେ ଧିରେ
ରଜ ଯାଉଛି ହଜି ।

ଓଡ଼ିଶାର ଜାତୀୟ ପର୍ବ ଯଦି
ହୋଇବ ସ୍ମୃତି
କାହାକୁ ନେଇ
ଏ ରାଜ୍ୟ ଗାଇବ
ତା' ଗୌରବ ଗୀତି ?

■■

# ହାର୍‌ଜିତ୍

ଛାଇ ଆଲୁଅର ଖେଳ
ଜୁଆର ଭଟ୍ଟାର ମେଳ
ଭ୍ରମ ସୃଷ୍ଟିକରେ ବୃକ୍ଷେ
ଦର ପାକଲା ଫଳ।

ତୋଳାଳିର ଅଭିଜ୍ଞତା
ଜାଣେ ଫଳର ପକ୍ୱତା
ଚଢ଼ି ତୋଳିବାରେ ହୁଅଇ କଷ୍ଟ
ହେଲେ ଫଳ ମିଳେ ହାତେ ଅକ୍ଷତ
ନଗି, ଆଙ୍କୁଡ଼ିରେ ତୋଳିଲେ
ଦାଗୀ ହେବାର ଥାଏ ଭୟ।

ବାମନର ହାତ ଚନ୍ଦ୍ରକୁ ପାଏ
ପରିଶ୍ରମେ କିଛି ଅସମ୍ଭବ ନ ଥାଏ
ଅବତାରୀ ବାମନ ପାଦକୁ
ବିଶ୍ୱ ନିଅଣ୍ଟ ହୁଏ।

ପାସଙ୍ଗ ସକାଶେ
ପାଲା ସିନା ଢ଼ଳେ
ନିକିତିର କଣ୍ଟା
ବଙ୍କା ନ ହୁଅଇ ତିଳେ
କରମର ଫଳେ
ଜୀବନ ଗୋଟାକ ଚଳେ।

ହାର୍‌ଜିତ୍ ପ୍ରତିଯୋଗିତାର ଧର୍ମ
ଦୁଃଖ, ସୁଖର ସର୍ବନାମ
କାର୍ଯ୍ୟ, କାରଣର
ମେଳ, ଅମେଳ ଖେଳ
ଚାଲେ ଜୀବନ ତମାମ।

ସାମ୍ନାକରି ସମସ୍ୟା
ହାରିବାକୁ କରି ଉପେକ୍ଷା
କର୍ତ୍ତବ୍ୟ ପ୍ରତି ରହିଲେ ନିଷ୍ଠା
ପାଷାଣୀ ଅହଲ୍ୟା ପରି
ଦିନେ ନା ଦିନେ ମିଳିବ
ମର୍ଯ୍ୟାଦା ପୁରୁଷ ରାମ କୃପା।

■■

# ଅବିର ଖେଳ

ରଙ୍ଗହୀନ ପ୍ରେମ
ଲାଗେନି କେବେ ନୂଆ ନୂଆ
ହାତଗଣି ସଂପର୍କର ଗଣିତ
କାଳେ କାଳେ ବଳନ୍ଦିଆ ।

ପତିପତ୍ନୀ ପ୍ରେମ
ହୋଇପାରେ ପବିତ୍ର
ପ୍ରେମିକ ପ୍ରେମିକା ସମ୍ବନ୍ଧ
କିନ୍ତୁ ବଡ଼ ଜୀବନ୍ତ ।

କୃଷ୍ଣ ଜାଣିଥିଲେ
ପ୍ରେମର ବେଭାର
ରାଧା ସଙ୍ଗେ କେଳି କରି
ଖେଳିଥିଲେ ଅବିର ।

ଅବିର ରଙ୍ଗ
ପ୍ରେମର ବୁହାଏ ତରଙ୍ଗ
ଆତ୍ମୀୟତା ଭରିଦିଏ
ସତେ ଅବା ରକ୍ତର ସଂପର୍କ।

ଫଗୁରେଣୁ ପ୍ରେମ ଅଣୁ
ହୃଦୟ ସହ ହୃଦୟକୁ ଯୋଡ଼େ
ପରକୁ ଆପଣା କରେ
ଦୁନିଆକୁ କରିନିଏ ନିଜର।

ଅବିର ବୋଳାର ଶୀତଳତା
ମନକୁ କରେ ମତୁଆଲା
ଜୀବନକୁ ଦିଏ
ଶାନ୍ତିର ବାରତା
ଫଗୁ ପୂନେଇଁ ବିତରେ
ପ୍ରେମର ମାଲମତା।

■■

# ଚଇତି ପୂନେଇଁ

ଟାଇଁଟାଇଁ ମାରୁଥିଲା ଖରା
ଝାଞ୍ଜି ପିଟୁଥିଲା ତୁହାକୁତୁହା
ଦିହମୁହଁ ଯାଉଥିଲା ପୋଡ଼ି
ଭୂଇଁରେ ପାଦ ପଡ଼ିଲେ
ଚିଆଁଉ କିନା ଲାଗୁଥିଲା ଖାଲି ।

ଗାଁ ଦାଣ୍ଡ ତାତି ତହ ଉଠୁଥିଲା
ଧୂ ଧୂ ଖରାବେଳେ
ଘରିଆଡ଼ ଖାଁ ଖାଁ ଲାଗୁଥିଲା
ଦୂର ବିଲ, ପଡ଼ିଆ,
ଶୁଖିଲା ନଈ ବାଲିରେ
ମରୀଚିକାର କୁହେଳି
ବାରିହୋଇ ପଡୁଥିଲା ।

ବୁଦାମୂଳେ ଝିଙ୍କାରି କରୁଥିଲା
ଝିଂ ଝିଂ ଶବଦ
ଗଛଡାଳ ଆଢୁଆଳୁ
କୋଇଲି, ବଣିର
ଭାସିଆସୁଥିଲା ରହି ରହି ରାବ ।

ଡାଡିର ଢାଳାରେ
ଆଉଟୁପାଉଟୁ ହେଉଥିଲା ଜୀବନ
ଥକା ଲାଗି ହଂସା ଉଡ଼ିଲେ ବି
ଚାଲିବାକୁ ଥିଲା ବାକି
ବହୁଦୂର ବାଟ।

ଦିନ ପରେ ରାତି ଆସିବା
ବିଧିର ବିଧାନ
ମାତ୍ର ସବୁ ରାତି ନୁହଁଇ
କଳା କାଳିମାର ଗାଢ଼ ଅନ୍ଧାର।

ଚଇତି ପୂନେଇଁ ରାତିରେ
ଆଖି ହୋଇଯାଏ ଖୋଷି
ନିର୍ମଳ ଆକାଶରେ
ଜହ୍ନ ହସୁଥାଏ ଖିଲିଖିଲି।

ସଫେଦ ଚାଦରରେ
ପୃଥିବୀଟା ସତେ ଅବା
ହୋଇଥାଏ ଘୋଡ଼େଇ।

ମୃଦୁ ପବନରେ
ଦେହ ଉଠୁଥାଏ ଶିହିରେଇ
ସୁନେଲି ସପନ
ମନେ ଯାଉଥାଏ ଜଡ଼େଇ।

ପୂନେଇଁ ଜହ୍ନ କେବେ
ନୁହଁଇ ଦର ଖଣ୍ଡିଆ
ଜୀବନକୁ ଦେଇଥାଏ
ପୂର୍ଣ୍ଣତାର ଇସାରା।

ଚଇତିର ଜହ୍ନ ରାତି
ପଥିକର ଆଶାବାଡ଼ି
ପ୍ରେମିକର ନନ୍ଦନକାନନ।

ଚଇତିର ପୂନେଇଁ ରାତି
ଦାରୁଣ ଖରାର
କରୁଣାମୟୀ ପ୍ରେମିକା।

ତା' ପ୍ରେମରେ ନ ଥାଏ
ଗରମ ନିଃଶ୍ୱାସର ପ୍ରଖରତା
ହାଲୁକାଫୁଲୁକା ଶୀତଳ ପରଶେ
ଦୁର୍ଦ୍ଦଣ୍ଡ ପ୍ରେମିକ ପ୍ରବର
ମାନେ ତା' ବଶ୍ୟତା।

ଚଇତି ପୂନେଇଁରେ ନ ଥାଏ
କୁଆଁର ପୂନେଇଁର ଉଚ୍ଚାଟତା
କି କାର୍ତ୍ତିକ ପୂନେଇଁର ଧାର୍ମିକତା।

ଡହଡହ ଗରମରେ ସିଝି
ଚଇତି ପୂନେଇଁ ଜାଣିଥାଏ
ଜୀବନର ନିରାଟ ବାସ୍ତବତା।

ଉତ୍ତେଜନା, ଶିଥିଳତା
ପ୍ରେମରେ ଆଣେନି ସଫଳତା
ଉଭୟର ଭାଗମାପେ
ଚଇତି ପୂନେଇଁ
ହୃଦୟରେ ଭରିଦିଏ
ପ୍ରେମର ଉଦାରତା।



# ବସନ୍ତ ଯାଇଛି ରୁଷି

ପଡ଼ିଛି ହୁଲିଆ ଜାରି
ବସନ୍ତ ଯାଇଛି ହଜି ।

ପଚାରିଲି କୋଇଲିକି
ବସନ୍ତର ବାତେନି ।

ଚୁପ୍‌ଚାପ୍ ଚାହିଁଥାଏ
ସୁର ତା'ର ଦବି ଦବି
ପୂରାପୂରି ଯାଇଛି ବସି ।

ଖୋଜିଲି ଆମ୍ବ ବଉଳକୁ
ତୋଟାବାଗନା ମୂଳକରେ
କଂକ୍ରିଟ ଜଙ୍ଗଲ ଧାଉଯାଉ ।

ମଳୟ ବି ହୋଇଛି ଉଭାନ
ଧୂଳି, ଧୂଆଁ, ତାତି
ଦେହକୁ ମାରୁଛି କାତି ।

ଜୀବନ ହୁଏ ଅସ୍ତବ୍ୟସ୍ତ
ବିକଳେ ଖୋଜୁଛି ବସନ୍ତ ।

ମା' କ'ଣ ଛୁଆକୁ ଛାଡ଼ି
ଏକା ଏକା ଯାଏ ଚାଲି !

ମଣିଷ ପାଇଛି ଦିବ୍ୟଜ୍ଞାନ
ବୁଦ୍ଧି ବିବେକରେ ନିପୁଣ।

ପ୍ରକୃତି ତା' ସଂପଦକୁ ଅଯାଚିତେ
ମଣିଷ ହାତେ ଦେଇଛି ଅଜାଡ଼ି।

ମଣିଷ ହେଇଛି ଆଜି
ତା' ମା'ର ଭଗାରି।

ସବୁକିଛି ନିଜ ପାଇଁ ଛଡ଼ାଇ ନେଇ
ପୃଥିବୀକୁ କରିଛି ଭିକାରୁଣୀ।

ପାଠଶାଠ ପଢ଼ା ପିଲା
ଦେଖେ ଆଗ ନିଜ ସ୍ୱାର୍ଥ।

ଅପାଠୁଆ, ମୂର୍ଖ
ମା'କୁ କରେନି ହତାଦର।

ପଶୁପକ୍ଷୀ, ଗଛଲତା ବୋଲାନ୍ତି ଇତର
ସେଇମାନେ କିନ୍ତୁ ସଚ୍ଚା ପ୍ରକୃତି ରକ୍ଷକ।

ବସନ୍ତ କଦାପି ନ ପାରଇ ହଜି
ଅଭିମାନେ ସେ ଯାଇଛି ରୁଷି।



# ମା

ମା ନାମରୁ ଝରଇ ଅମୃତ
ଦୁଃଖ ଶୋକକୁ କରଇ ନିପାତ ।

ମତେ କରେ କେତେ ଆଦରଯତନ
ମୁଁ ଜାଣି ତା'ର ଜୀବନ ଧନ ।

ମଥାପାତି ସହେ ଅଳି ଅଝଟ
ବୁହାଏ ଲୁହ ଦେଖି ମୋ କଷ୍ଟ ।

ଫେରିବା ବାଟକୁ ମୋର ଚାହିଁ ବସିଥାଏ
ଅଖିଆ ଅପିଆ ମତେ ଝୁରି ହେଉଥାଏ ।

ହଉପଛେ ଯେତେ ହଇରାଣ ହରକତ
ତାଙ୍କି ରଖିଥାଏ ମତେ ତା' ପଣତ ।

ମା ହାତ ଧରି ଚାଲି ଶିଖିଲି
ତା' ସ୍ନେହ ସୋହାଗରେ ଖଡ଼ି ଛୁଇଁଲି ।

ଖାଇ ଗୁରୁମା ଛାଟ ପାହାର
ବନିଲି ତାଙ୍କ ଘଟ ପ୍ରବର ।

ନୀତି ଆଦର୍ଶ କଥା ସେ ଶୁଣାନ୍ତି
ଆଦର କରି ବିଦ୍ୟା ବିତରନ୍ତି ।

ଲଭିଲେ ଦେବୀ ମା'ର ଆଶିଷ
ଧନମାନ ମିଳଇ ଅଶେଷ ।

ମନର ଆସୁରିକ ଭାବ
ମାତୃତ୍ୱ ପ୍ରେମରେ ହୁଅଇ ନିଷ୍ପ୍ରଭ ।

ମା ପାଦେ ସଦା ପଶିଲେ ଶରଣ
ବିଶ୍ୱ ବିଜୟୀ ଟିକା କରିବା ବରଣ ।





ଡକ୍ଟର ଚିତ୍ତ ରଂଜନ ପଣ୍ଡା କେବଳ କବି ଭାବେ ପରିଚିତି ଲାଭ କରିଛନ୍ତି ତା ନୁହେଁ, ସେ ଜଣେ ସମାଲୋଚକ, ଗାଳ୍ପିକ ରୂପେ ମଧ୍ୟ ବେଶ୍ ଜଣାଶୁଣା । ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ, ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକରେ ଡକ୍ଟର ପଣ୍ଡା ବର୍ତ୍ତମାନ ଅଧ୍ୟାପନା କାର୍ଯ୍ୟରେ ନିୟୋଜିତ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଥିବା ସରକାରୀ ମହାବିଦ୍ୟାଳୟରେ ଶିକ୍ଷାଦାନ କରିବା ଅବସରରେ ଏବଂ ପିଲାଦିନୁ ସମାଜ ସେବାକୁ ଆପଣେଇ ନେଇ ଜନଜୀବନର ନାନା କ୍ଷେତ୍ରରୁ ସେ ଯେଉଁ ତିକ୍ତ, ମଧୁର ଅନୁଭୂତି ସାଉଁଟି ଆଣିଛନ୍ତି ତାକୁ ନେଇ ତାଙ୍କ ସୃଷ୍ଟି ଖୁବ୍ ସରସ, ସୁନ୍ଦର ହୋଇଛି । ଜାତୀୟ, ଅନ୍ତର୍ଜାତୀୟ ସ୍ତରରେ ସେ ଜଣେ ଉଚ୍ଚକୋଟୀର ଆଲୋଚକ ଭାବେ ମଧ୍ୟ ବିଶେଷ ଖ୍ୟାତି ଅର୍ଜନ କରିଛନ୍ତି ।



**ସୋନମ୍ ପ୍ରକାଶନ**

ବାଦାମବାଡ଼ି, କଟକ-753012, ଓଡ଼ିଶା
ଫୋନ୍: 9437028718, 9439953750


ISBN 81-7984-050-6
9788179840504